ଭରତୀୟ ଗଭର୍ଣ୍ଣର ଜେନେରେଲ ମିଣ୍ଟୋଙ୍କର

ସ୍ମୃତ୍ୟର୍ଥେ

# ଇଂରାଜ—ରାଜତ୍ୱ

( ୨ ୟ ସଂସ୍କରଣ ସମ୍ବର୍ଦ୍ଧିତ ଓ ପରିବର୍ତ୍ତିତ )

ବାମଣ୍ଡାର ମାନନୀୟ ଯୁବରାଜ

ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବ ମହୋଦୟଙ୍କ

ଦ୍ୱାରା ସଂଗୃହୀତ ।

ଅନୁମତ୍ୟନୁସାରେ

ଶ୍ରୀ ଦାମୋଦର ମିଶ୍ର ପଦ୍ୟାଲଙ୍କାର

କର୍ତ୍ତୃକ

ପ୍ରକାଶିତ ।

ବାମଣ୍ଡା ସୁଢଳ ପ୍ରେସରେ ମୁଦ୍ରିତ ।

୧୮୯[illegible]

ମୂଲ୍ୟ ୫୦ ୵ ମାତ୍ର ।

# ବିଜ୍ଞାପନ ।

୧୮୯୬ ସାଲର ସମ୍ବଲପୁର ଜିଲ୍ଲାନ୍ତର୍ଗତ ବିଦ୍ୟାଳୟମାନଙ୍କ ସ୍ଥିତରେ ବାମଣ୍ଡା ବିଦ୍ୟାଳୟ ସମୂହର ପାଠ୍ୟପୁସ୍ତକ ନିର୍ବାଚନ କରାଯାଇଅଛି ; ତନ୍ମଧ୍ୟରୁ ଅପର ପ୍ରାଇମେରିରେ 'କୃଷିପାଠ' ନାମକ ଖଣ୍ଡିଏ ଦୁର୍ବୋଧ କଠିନ ପୁସ୍ତକ ପାଠ୍ୟ ମଧ୍ୟରେ ଥିବା ଏବଂ କୋମଳମତି ବାଳକମାନଙ୍କ ପକ୍ଷେ ତାହା ଅନୁପଯୋଗୀ ବିବେଚ୍ୟ ହେତୁରୁ ବାମଣ୍ଡାର ପ୍ରତିଷ୍ଠିତ 'ଶିକ୍ଷକ-ସମିତି' ଉପରିବର୍ତ୍ତୀ ଖଣ୍ଡିଏ ସରଳ ଭାରତବର୍ଷୀୟ ଇଂରେଜ-ରାଜତ୍ୱ ପ୍ରକାଶ ନିମନ୍ତେ ଅମ୍ଭଙ୍କୁ ଅନୁରୋଧ କରିଥିଲେ ।

ଅମ୍ଭେ ଶିକ୍ଷକ-ସମିତିଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ସନ୍ତୁଷ୍ଟ ସଂକ୍ଷିପ୍ତ ଓ ସରଳ ଭାଷାରେ ବିବିଧ ପୁସ୍ତକମାନଙ୍କରୁ ଇଂରେଜ ରାଜତ୍ୱ ସଙ୍କଳନ କରି ଅଧୁନା ପୁସ୍ତକାକାରରେ ପ୍ରକାଶିତ କଲୁଁ ; ଏହା ଯେ ଏକାବେଳକେ ନିର୍ଦ୍ଦୋଷ ହୋଇଅଛି ଏମନ୍ତ ନୁହେ ତେବେ ଯଦ୍ୟପି ସୁକୁମାରମତି ବାଳକମାନଙ୍କର ଏତଦ୍ୱାରା କିଞ୍ଚିନ୍ମାତ୍ର ଉପକାର ହୁଏ ତେବେ ଶ୍ରମ ସାଫଲ୍ୟ ବୋଧକରି ଦ୍ୱିତୀୟ ମୁଦ୍ରଣରେ ପୁସ୍ତକ ଖଣ୍ଡି ସର୍ବାଙ୍ଗ ସୁନ୍ଦର କରିବାକୁ ଯତ୍ନଶୀଳ ହେବୁଁ ।

ପରିଶେଷରେ ବକ୍ତବ୍ୟ ଏହି ଯେ ରାଜକୁମାର ସ୍କୁଲ ଅଧ୍ୟେତା ଶ୍ରୀ ଘନବନ୍ଧୁ ଗଡନାୟକ ପୁସ୍ତକ ସଂଗ୍ରହକାଳୀନ ଯଥେଷ୍ଟ ସାହାଯ୍ୟ କରିଥିବାରୁ ତାଙ୍କୁ ବିଶେଷ ଧନ୍ୟବାଦ ଦେଉଅଛୁଁ । ଇତି ।

ତା ୧୧ । ୧୧ । ୯୬ ।

ଶ୍ରୀରାଜକୁମାର-ବାମଣ୍ଡା ।

## ୨ ୟ ସଂସ୍କରଣର ବିଜ୍ଞାପନ ।

ଇଂରାଜ—ଓଡ଼ିଆ ପୁସ୍ତକ ବାମଣ୍ଡା ସ୍କୁଲ ପାଠ୍ୟ ନିମନ୍ତେ ଶିକ୍ଷକ ସମିତିଙ୍କ ଅନୁରୋଧ କ୍ରମେ ମୁଦ୍ରିତ କରା ଯାଇଥିଲା ; ଉକ୍ତ ପୁସ୍ତକ ଖଣ୍ଡି ବର୍ତ୍ତମାନ ଶେଷ ହୋଇଥିବା ତଥା ଜଣା ହେବୁ ତହିଁରେ ଅନେକ ଅଶୁଦ୍ଧ ଥିବା ହେତୁତଃ ବର୍ତ୍ତମାନ ମାନନୀୟ ଶ୍ରୀଯୁକ୍ତ ବାମଣ୍ଡା ଯୁବରାଜ ମହୋଦୟଙ୍କ ଅନୁମତ୍ୟନୁସାରେ ପରିବର୍ତ୍ତିତ , ପରିବର୍ଦ୍ଧିତ ଓ ସଂଶୋଧିତକରି ଆମ୍ଭେ ଏହି କ୍ଷୁଦ୍ରପୁସ୍ତକ ଖଣ୍ଡିର ଦ୍ୱିତୀୟ ସଂସ୍କରଣ ପ୍ରକାଶକଲୁଁ ; ପୂର୍ବ ଖଣ୍ଡି ଅପେକ୍ଷା କୃତ ଉପଯୋଗୀ କରିବା ବିଷୟରେ ତ୍ରୁଟି କରାଯାଇ ନାହିଁ । ଯେବେ ଏତଦ୍ୱାରା କୋମଳମତି ଛାତ୍ର ସମସ୍ତଙ୍କର ଏବଂ ଶିକ୍ଷକମାନଙ୍କର କିଞ୍ଚିତ୍ ଉପକାର ହୁଏ ତାହାହେଲେ ସମସ୍ତ ଶ୍ରମ ସଫଳ ବୋଧକରିବୁଁ ।

ପରିଶେଷରେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ବାମଣ୍ଡା 'ଶିକ୍ଷାତତ୍ତ୍ୱ ସମିତି' ଏପୁସ୍ତକକୁ ଚଳନ୍ତ ବର୍ଷର ପାଠ୍ୟ ପୁସ୍ତକରୂପେ ଗ୍ରହଣ କରି ଅନୁଗୃହୀତ କରି ଅଛନ୍ତି ।

ପ୍ରକାଶକ

ଶ୍ରୀ ଦାମୋଦର ମିଶ୍ର ଶର୍ମ୍ମା—ବାମଣ୍ଡା

# ଇଂରାଜ-ରାଜତ୍ୱ ।

## ପ୍ରଥମ ଅଧ୍ୟାୟ ।

ସୀମା—ଭାରତର ଉତ୍ତରରେ ହିମାଳୟ, ଦକ୍ଷିଣରେ ଭାରତ ସାଗର, ପୂର୍ବରେ ବ୍ରହ୍ମଦେଶ ଓ ବଙ୍ଗୋପସାଗର ଏବଂ ପଶ୍ଚିମରେ ଆରବସାଗର, ଓ ବେଲୁଚିସ୍ଥାନ । ଲୋକ ସଂଖ୍ୟା ୨୯ କୋଟି । ଭାରତ ପ୍ରଧାନତଃ ୨ ଭାଗରେ ବିଭକ୍ତ ଯଥା ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ, ଉତ୍ତର ଭାଗକୁ ଆର୍ଯ୍ୟାବର୍ତ୍ତ, ଦକ୍ଷିଣ ଭାଗକୁ ଦକ୍ଷିଣା ପଥ ବା ଦାକ୍ଷିଣାତ୍ୟ କହନ୍ତି । ଭାରତରେ ୬୦୦ ଗୋଟି କରଦ ମିତ୍ରରାଜ୍ୟ, ଏବଂ ୨ ଗୋଟି ସ୍ୱାଧୀନ ରାଜ୍ୟ ଅଛି । ଏହାକୁ ଦେଶୀୟମାନେ ଭାରତବର୍ଷ, ମୁସଲମାନମାନେ ହିନ୍ଦୁସ୍ଥାନ, ଇଂରାଜମାନେ ଇଣ୍ଡିଆ କହନ୍ତି । ଏଦେଶରେ ବିଭିନ୍ନ ପ୍ରକାର ଏକଶତ ଭାଷା ପ୍ରଚଳିତ ଅଛି । ଭାରତ ବର୍ଷ ଆୟତନରେ ଇଉରୋପ ମହାଦେଶରୁ ବୃଟନ ଦ୍ୱୀପର ପ୍ରାୟ ୧୪ $\frac{୧}{୨}$ ଗୁଣ ହେବ ।

ଖ୍ରୀ ୧୭୦୭ ଖ୍ରୀ ଅବ୍ଦରେ ଆଓରଙ୍ଗଜେବଙ୍କ ମୃତ୍ୟୁ ପରେ ଦିଲ୍ଲୀଶ ସମ୍ରାଟଙ୍କର ଦାକ୍ଷିଣାତ୍ୟରେ ପ୍ରାଧାନ୍ୟ ଲୋପହେଲା । ନିଜାମ ଉଲ୍-ମୁଲକ ବଂଶାନୁକ୍ରମେ ଅବସ୍ଥାନ କରିବା ନିମନ୍ତେ ହାଇଦ୍ରାବାଦକୁ ରାଜଧାନୀ କଲେ । ନିଜାମ (କର୍ଣ୍ଣାଟର ଜଣେ ଉପେଟ) ଅର୍କଟର ନବାବ ନାମରେ ପରିଗଣିତ ହେଲେ । ଏହି ସମୟରେ ତ୍ରିଚନାପଲ୍ଲୀ ଜଣେ ହିନ୍ଦୁ ରାଜା ଏବଂ ତାଞ୍ଜୋର ଶିବାଜୀଙ୍କ ଜଣେ ବଂଶଜ କର୍ତ୍ତୃକ ଶାସିତ ହେଲା । ମହୀଶୂର ସିନେ ୨ ଗୋଟିଏ ହିନ୍ଦୁ ରାଜ୍ୟ ହୋଇ ଉଠିଲା । ସେତେବେଳେ 'ନାୟକ' ନାମରେ ଅଭିହିତ

ଜମିଦାରମାନେ ପାର୍ବତୀୟ ଦୁର୍ଗମାନଙ୍କରେ ସ୍ୱୀୟ ସ୍ୱାଧୀନତା ସ୍ଥାପନ କରିଥିଲେ ।

ପ୍ରଥମ କର୍ଣ୍ଣାଟଯୁଦ୍ଧ — ( ୧୭୪୬—୧୭୪୮ ଖ୍ରୀଃ ପର୍ଯ୍ୟନ୍ତ ) ଖ୍ରୀଃ ୧୭୪୪ ସାଲଠାରେ ଅଷ୍ଟ୍ରିୟାର ସିଂହାସନ ନିମନ୍ତେ ଇଉରୋପରେ ଫରାସି ଓ ଇଂରେଜମାନଙ୍କର ବିବାଦ ହେବାରୁ ଭାରତରେ ଉକ୍ତ ଦୁଇ ଜାତିଙ୍କର ବିବାଦ ଆରମ୍ଭ ହେଲା ।

ପ୍ରଧାନ ଘଟଣା— ( ୧ ) " ଲାବୋର୍ଡୋନାସ " ଖ୍ରୀଃ ୧୭୪୬ ରେ ମାନ୍ଦ୍ରାଜ ଆକ୍ରମଣକରି ଅଧିକାର କଲେ । ( ୨ ) " ଏଡମିରାଲ ବସ୍କାଉଇନ " ଏବ " ମେଜର ଲରେନ୍ସ " ଖ୍ରୀଃ ୧୭୪୮ ରେ ପଣ୍ଡିଚେରୀ ଅବରୋଧକରି ଅକୃତକାର୍ଯ୍ୟ ହେଲେ ।

ଶେଷଫଳ—ଏହି ଯୁଦ୍ଧ ଖ୍ରୀ ୧୭୪୮ ରେ " ଆଇଲାସ୍ପେଲ " ସନ୍ଧି ଦ୍ୱାରା ସ୍ଥଗିତ ହେଲା, ଏହି ସନ୍ଧିରେ ମାନ୍ଦ୍ରାଜ, ଇଂରେଜମାନଙ୍କର ଅଧିକୃତ ହେଲା ।

୨ ୟ ଓ ୩ ୟ କର୍ଣ୍ଣାଟଯୁଦ୍ଧ— ( ୧୭୪୯—୧୭୬୧ ) ୧୭୪୯ ଖ୍ରୀଃରେ ଦକ୍ଷିଣର ସୁବେଦାର ନିଜାମ ଉଲ୍ମୁଲ୍କ ମୃତ୍ୟୁହେବାରୁ ହାଇଦ୍ରାବାଦର ସିଂହାସନ ନିମନ୍ତେ ତାହାଙ୍କ ଜ୍ୟେଷ୍ଠପୁତ୍ର ' ମଜଫରଜଙ୍ଗ ' ୨ ୟ ପୁତ୍ର ' ନାଜିରଜଙ୍ଗ ' ଏହି ଦୁଇଜଣ ପରସ୍ପର ବିବାଦରେ ପ୍ରବୃତ୍ତ ହେଲେ । ଇତିମଧ୍ୟରେ କର୍ଣ୍ଣାଟର ନବାବ ପଦ ପ୍ରାପ୍ତୀଚ୍ଛାରେ ପ୍ରଥମ ନବାବ ଦୋସ୍ତଅଲିଙ୍କର ଯାମାତା ' ଚନ୍ଦାସାହେବ ' ଯୁଦ୍ଧ କରିଥିଲେ । ପଣ୍ଡିଚେରୀର ଶାସନକର୍ତ୍ତା " ଡୁପ୍ଲେକ୍ସ " ଚନ୍ଦାସାହେବଙ୍କୁ ମରହଟ୍ଟାମାନଙ୍କ ବନ୍ଦୀରୁ ଉନ୍ମୁକ୍ତ କଲେ " ଏଣୁ ଅନତି ବିଳମ୍ବରେ କର୍ଣ୍ଣାଟ ଯୁଦ୍ଧାରମ୍ଭ ହେଲା ।

ଫରାସି, ଓ ଚନ୍ଦାସାହେବ, ମଜଫରଜଙ୍ଗଙ୍କ ସହିତ ଯୋଗ ଦେଲେ । ଖ୍ରୀ ୧୭୪୯ ରେ ବୟୋବୃଦ୍ଧ ନବାବ " ଅନୱରଉ-

ଦିନ" ଅମ୍ବୁରରେ ବଧହେଲେ । ଏହାଙ୍କର ପୁତ୍ର 'ମହମ୍ମଦ' ବିଚିନ୍ନା ପଲ୍ଲିକୁ ପଳାୟନ କଲେ । ନାଜର , ମହମ୍ମଦଅଲି ଏବ ଇଂରେଜମାନଙ୍କ ସାହାଯ୍ୟ ଅନ୍ୱେଷଣ କରୁଥିଲେ, ଏହିପ୍ରକାର ନାଜର; ଇଂରେଜ ଓ ମହମ୍ମଦ ଫରାସିମାନଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେଲେ , ମଜଫର ଓ ଚନ୍ଦସାହେବ ଫରାସିଙ୍କ ପକ୍ଷ ଗ୍ରହଣ କଲେ ।

ପ୍ରଧାନ ଘଟଣା—( ୧ ) ଖ୍ରୀ: ୧୭୫୧ ରେ 'କ୍ଲାଇବ' ଫରାସିମାନଙ୍କ ଅଧିକୃତ ଅର୍କଟ ନଗର ଅଧିକାର କଲେ । ଚନ୍ଦସାହେବ ଫେରିଆସି ଏହି ଦୁର୍ଗ ଆକ୍ରମଣ କଲେ କିନ୍ତୁ କ୍ଲାଇବ ଦୁର୍ଗରକ୍ଷା କରିଥିଲେ । ଏହି ଯୁଦ୍ଧ ସମୟରେ ଫରାସିମାନେ ଇଂରେଜମାନଙ୍କ ଠାରେ ଆତ୍ମସମର୍ପଣ କଲେ ।

( ୨ ) ୧୭୬୦ ରେ ଓ୍ୱାଣ୍ଡିଓ୍ୱାସଠାରେ ଫରାସିମାନେ ପରାଭୂତ ହେଲେ ।

( ୩ ) ୧୭୬୧ ରେ ଇଂରେଜମାନଙ୍କ ଦ୍ୱାରା ଝିଞ୍ଜୀର ପଣ୍ଡିଚେରୀ ଦୁର୍ଗ ଆକ୍ରମଣ ହେଲା ।

ଶେଷଫଳ—୧୭୬୧ରେ ଫରାସି ଓ ଇଂରେଜମାନଙ୍କର ବିଦ୍ରୋହ ଶାନ୍ତ ହେଲା ଏବ ୧୭୬୩ ରେ ପାରିସ ନଗରରେ ସନ୍ଧି ହୋଇଥିଲା । ସେ ସନ୍ଧିରେ ଫରାସିମାନେ ପଣ୍ଡିଚେରି ଫେରିପାଇଲେ ।

---

## ବଙ୍ଗଦେଶର ନବାବ ସମ୍ବନ୍ଧେ ସଂକ୍ଷିପ୍ତ ବିବରଣ ।

ଔରଙ୍ଗଜେବଙ୍କ ମୃତ୍ୟୁ ଉତ୍ତାରୁ ମୁର୍ଶିଦକୁଲିଖାଁ ୧୭୦୪-୧୭୨୫ ପର୍ଯ୍ୟନ୍ତ ବଙ୍ଗଦେଶରେ ରାଜତ୍ୱ କଲେ । ଏ ଦକ୍ଷିଣାତ୍ୟର ଜଣେ ଗରିବ ବ୍ରାହ୍ମଣପୁତ୍ର, ଜଣେ ଇସ୍ପାହାନ ବଣିକ ଦ୍ୱାରା ଦାସରୂପରେ ପାରସ୍ୟକୁ ନୀତହୋଇ ଜଣେକ ମୁସଲମାନ କର୍ତ୍ତୃକ ଭରଣକୁ

ଅସିଥିଲେ ଏହାକୁ ପରବର୍ତ୍ତି ମୁରସିଦାବାଦକୁ ରାଜଧାନୀ କଲେ ।

ସୁଜାଉଦ୍ଦିନ—ମୁର୍ଶିଦକୁଲିଖାଁଙ୍କ ରାଜତ୍ୱପରେ ତାଙ୍କର ଜାମାତା ସୁଜାଉଦ୍ଦିନ ୧୭୨୫—୧୭୩୯ ପର୍ଯ୍ୟନ୍ତ, ବଙ୍ଗଦେଶରେ ରାଜତ୍ୱ କଲେ । ଏଜଣେ ସତ୍ ପ୍ରକୃତି ଲୋକଥିଲେ, ତାଙ୍କ ସମୟରେ କୌଣସି ବିଶେଷ ଘଟନା ଘଟିନଥିଲା ।

ସେରଫରାଜଖାଁ—ସୁଜାଙ୍କର ପୁତ୍ର ସେରଫ ୧୭୩୯—୧୭୪୦ ପର୍ଯ୍ୟନ୍ତ ରାଜତ୍ୱ କରି ଅଲିବର୍ଦ୍ଦି ଦ୍ୱାରା ଖ୍ରୀ: ୧୭୪୦ ରେ ନିହତ ହେଲେ ।

ଅଲିବର୍ଦ୍ଦିଖାଁ — ଖ୍ରୀ: ୧୭୪୦—୧୭୫୬ ପର୍ଯ୍ୟନ୍ତ ରାଜପଣ କଲେ । ଏହାଙ୍କ ରାଜତ୍ୱ ସମୟର ପ୍ରଥମାଂଶ ମରହଟ୍ଟାମାନଙ୍କ ଆକ୍ରମଣରେ ଶେଷ ହୋଇଥିଲା । ସେ ଖ୍ରୀ: ୧୭୫୧ ରେ ମରହଟ୍ଟାମାନଙ୍କୁ ଓଡିଶା ପ୍ରଦାନ କରି ସେମାନଙ୍କ ଆକ୍ରମଣରୁ ରକ୍ଷା ପାଇଥିଲେ । ୧୭୪୨ ଖ୍ରୀ: ରେ କଲିକତା ବାସିମାନେ ଚତୁର୍ଦ୍ଦିଗରେ ଗୋଟିଏ ଖାଇ କର୍ମ୍ମାଣର ଅନୁମତି ପ୍ରାପ୍ତ ହୋଇଥିଲେ, ଉକ୍ତ ଗାଇକୁ ବର୍ତ୍ତମାନ " ମରହଟ୍ଟାଖାଇ " କହନ୍ତି ।

ସିରାଜଦୌଲା—୧୭୫୬ ରୁ ୧୭୫୭ ପର୍ଯ୍ୟନ୍ତ ଏକବର୍ଷ ରାଜପଣ କରିଥିଲେ । ସେ ୧୮ ବର୍ଷ ସମୟରେ ସ୍ୱୀୟ ପିତାମହଙ୍କ ଠାରୁ ସିଂହାସନ ପ୍ରାପ୍ତ ହୋଇଥିଲେ । ସିରାଜ, ଇଂରାଜମାନଙ୍କ ଉପନିବେଶ କଲିକତାକୁ ନଷ୍ଟକରିବାପାଇଁ ଯାତ୍ରାକଲେ, ତହିଁରେ ଅନେକ ଇଂରାଜ ଜାହାଜରେ ପଳାଇ ପ୍ରାଣରକ୍ଷା କଲେ । ଅବଶିଷ୍ଟ ୧୪୬ ଜଣ ଇଂରାଜଙ୍କୁ ୧୭୫୬ ସାଲ ଜୁନ ତା ୨୦ ରାତ୍ରରେ ୧୮ ବର୍ଗ ଫୁଟ ଏକ କୋଠରିରେ ଅବରୁଦ୍ଧକରି ରଖିଲେ ।

ତନ୍ମଧ୍ୟରୁ ୨୩ ଜଣ ବ୍ୟତୀତ ସମସ୍ତେ ମୃତ୍ୟୁଲାଭ କଲେ । ତାହା ବର୍ତ୍ତମାନ " ଅନ୍ଧକୂପହତ୍ୟା " ନାମରେ ଅଭିହିତ ଅଛି ।

କ୍ଲାଇବ ମାନ୍ଦ୍ରାଜଠାରେ ଏସମ୍ବାଦ ପ୍ରାପ୍ତ ହୋଇ ତାହାର ପ୍ରତିଶୋଧ ଆଶାରେ ଓ୍ଵାଟସନଙ୍କ ସହିତ କେତେଗୁଡ଼ିଏ ସୈନ୍ୟ ନେଇ ଶୀଘ୍ର କଲିକତା ମୁକ୍ତକଲେ ।

ନବାବ ଇଂରେଜମାନଙ୍କୁ କ୍ଷତିପୂରଣ ଦେଲେ ଏବଂ ବିଦ୍ରୋହ ଶାନ୍ତ ଲାଭକଲା । କିନ୍ତୁ ଏହି ଶାନ୍ତି ବହୁକାଳ ସ୍ଥାୟୀ ହେଲା ନାହିଁ । ଇଉରୋପରେ ଇଂରେଜ ଓ ଫରାସିମାନଙ୍କ ଯୁଦ୍ଧ ଘୋଷଣା ହୋଇଥିବାରୁ କ୍ଲାଇବ, ଚନ୍ଦନନଗର ଅଧିକାର କଲେ, ନବାବ ଫରାସିମାନଙ୍କ ପକ୍ଷ ସମର୍ଥନ କଲେ । କ୍ଲାଇବ ୧୭୫୭ ରେ ୩୦୦୦ ହଜାର ସୈନ୍ୟ ନେଇ ପଲାଶୀ ପ୍ରାଙ୍ଗଣରେ ନବାବଙ୍କୁ ପରାସ୍ତ କଲେ । ନବାବ ପରାସ୍ତ ହୋଇ ହସ୍ତୀ ଦ୍ଵାରା ପଲାୟନ ବେଳେ ମିରଜାଫରର ପୁଅ ମିରନ ଦ୍ଵାରା ବଧହେଲେ ।

ସେ ଅତ୍ୟନ୍ତ ଭୋଗାଭିଳାଷୀ, ସ୍ଵେଚ୍ଛାଚାରୀ, ନୃଶଂସ ନବାବ ଥିଲେ, ତାଙ୍କର ପ୍ରଥମରୁ ଇଂରେଜଙ୍କ ସହିତ ବିଦ୍ଵେଷ ଥିଲା । ସେ କଲିକତାରୁ ଇଂରାଜଙ୍କୁ ଦୂର କରିବାକୁ ଛିଦ୍ରାନ୍ୱେଷଣ କରୁଥିଲେ, ଇତିମଧ୍ୟେ ରାଜା ରାଜବଲ୍ଲଭଙ୍କ ପୁତ୍ର କୃଷ୍ଣଦାସ ତାହାଙ୍କ ଭୂସମ୍ପତ୍ତି ସହିତ ପଳାୟନ କରି ଇଂରାଜମାନଙ୍କ ସାହାଯ୍ୟ ଗ୍ରହଣ କଲେ । ନବାବ କୃଷ୍ଣଦାସଙ୍କୁ ପ୍ରତ୍ୟର୍ପଣ ନିମନ୍ତେ ତଦାନିନ୍ତନ ଇଂରାଜ ଗଭର୍ଣ୍ଣର ଡ୍ରେକ ସାହେବଙ୍କୁ ଆଦେଶ କଲେ, କିନ୍ତୁ ସେ ତାଙ୍କର ଆଦେଶ ପାଳନ କଲେନାହିଁ ଏସମୟରେ ସେ କଲିକତା ଦୁର୍ଗ ଭାଙ୍ଗିପକାଇବାକୁ ଆଦେଶ କରିଥିଲେ । କିନ୍ତୁ ଏହି ଆଦେଶ ଇଂରାଜମାନେ ମାନିଲେ ନାହିଁ ।

ମିରଜାଫର—ମିରଜାଫର ପଲାଶୀ ଯୁଦ୍ଧପରେ ବଙ୍ଗ ସିଂହାସନ

ପ୍ରାପ୍ତ ହୋଇ ଇଂରାଜମାନଙ୍କୁ ଅନେକ ଅର୍ଥଦାନ କଲେ ଏବ କମ୍ପାନୀର କ୍ଷତିପୂରଣ କଲେ । ଏହି ଦାନରେ , ଇଂରେଜମାନେ ୨୭ ଲକ୍ଷ ୯୭ ହଜାର ୭୫୦ ପାଉଣ୍ଡ ପାଇଥିଲେ । ସେ କମ୍ପାନୀଙ୍କୁ ଚବିଶ ପରଗଣାର ଦେଲେ ।

ମିରକାସିମ—ଖ୍ରୀଃ ୧୭୬୧ ରେ ମିରଜାଫର ସିଂହାସନ ଚ୍ୟୁତ ହେବାରୁ ତାଙ୍କର ଜାମାତା ମିରକାସିମ ବଙ୍ଗର ଅଧୀଶ୍ୱର ହେଲେ ମିରକାସିମ ସିଂହାସନାରୋହଣ ପରେ ଇଂରାଜମାନଙ୍କୁ ପୁରସ୍କାର ସ୍ୱରୂପ ବର୍ଦ୍ଧମାନ ମେଦନୀପୁର , ଏବ ଚଟ୍ଟଗ୍ରାମ , ପ୍ରଦାନକଲେ । ସେ ମୁରସିଦାବାଦ ପରିବର୍ତ୍ତିରେ ମୁଙ୍ଗେରକୁ ରାଜଧାନୀ କରି ବିଶେଷ ସୈନ୍ୟ ସହିତ ଇଂରାଜମାନଙ୍କ ସଙ୍ଗେ " ବଳପରୀକ୍ଷା " ନିମନ୍ତେ ସମ୍ପ୍ରସ୍ତୁତ ଥିଲେ । ପୂର୍ବ କାଳେ କମ୍ପାନୀ 'ଶୁଳ୍କ' ବ୍ୟତିତ ବଙ୍ଗ ଦେଶରେ ବାଣିଜ୍ୟ କରୁଥିଲେ । ପଲାଶୀ ଯୁଦ୍ଧରେ କମ୍ପାନୀ କର୍ମଚାରୀ ସେହି ଅଧିକାର ପ୍ରାର୍ଥୀ ହେଲେ । କିନ୍ତୁ ଦେଶୀୟ ବଣିକମାନେ ଶୁଳ୍କ ଦେବାକୁ ବାଧ୍ୟ ହୋଇଥିଲେ । ଏବଂ ବିଭିନ୍ନ ଭାବ ଦୂର କରଣାର୍ଥି ନବାବ ମିରକାସିମ ଉକ୍ତ ଶୁଳ୍କ ପ୍ରଥା ଏକାବେଳକେ ଉଠାଇ ଦେଲେ । ଇଂରେଜ କାଉନସିଲର କହିଲେ ନବାବଙ୍କର କ୍ଷମତା ନାହିଁ ' ଗବର୍ଣ୍ଣର ଭାନ୍ସିଟାର୍ଟ ଓ କାଉନ୍‌ସିଲର ମେମ୍ବର ଓୟାରେନ୍ ହେଷ୍ଟିଂସ ଏହି ଉଭୟ ନବାବ ଓ ଇଂରେଜମାନଙ୍କର ବିବାଦ ନିଷ୍ପତ୍ତିର ଚେଷ୍ଟାକର ଅକୃତ କାର୍ଯ୍ୟ ହେଲେ । ପାଟନା ନଗରରେ ୨୦୦୦ ହଜାର ଇଂରେଜ ନିହତ ହୋଇଥିଲେ । ' ଘେରିଅ ' ଓ " ଉଦ୍ୱାନ୍ଲେ " ଠାରେ ମିରକାସିମଙ୍କର ଦୁଇଦଳ ସୈନ୍ୟ ପରାଜିତ ହୋଇ ଅଯୋଧ୍ୟାର ନବାବ " ଉଜିର ସୁଜାଉଦ୍ଦୌଲା " ଙ୍କର ଆଶ୍ରୟ ଗ୍ରହଣ କଲେ ୧୭୬୪ ରେ ନବାବ ଉଜିର , ମିରକାସିମ , ଓ ସାହା ଆଲମ ,

ବକ୍ସାଯୁଦ୍ଧରେ ପରାଭୂତ ହେଲେ, ଏହି ସଙ୍ଗରେ ମିରକାସିମଙ୍କର ମଧ୍ୟ ସକଳ ଅଶା ନିଃଶେଷ ହେଲା ।

ମିରକାସିମଙ୍କ ପରାସ୍ତପରେ ମିରଜାଫର ୨ ୟ ବାର ସିଂହାସନ ପ୍ରାପ୍ତ ହୋଇ ଖ୍ରୀ ୧୭୬୫ ମୃତ୍ୟୁ କାଳ ପର୍ଯ୍ୟନ୍ତ ନାମମାତ୍ର ଶାସନ କରୁଥିଲେ । ବଙ୍ଗଦେଶର ଶେଷ ନବାବ ନିଜାମଦୌଲା ଇଂରେଜମାନଙ୍କୁ ଦେୱାନୀ ଭାର ପ୍ରତ୍ୟର୍ପଣ କରିବାରୁ ବଙ୍ଗଦେଶର ସମସ୍ତ ଭାର ଇଂରେଜମାନଙ୍କ ହାତକୁ ଯାଇଥିଲା ।

କ୍ଲାଇବଙ୍କ ୧ ମ ଶାସନ — ( ୧୭୫୮—୧୭୬୦ ) କ୍ଲାଇବ ୧ ମ ବଙ୍ଗଦେଶ ଉପନିବେଶରେ ଗବର୍ଣ୍ଣର ସ୍ୱରୂପ ନିଯୁକ୍ତ ହେଲେ ଦିଲ୍ଲି ସମ୍ରାଟ ସାହଆଲମ ( ସାହାଜାଦା ) ଓ ଅଯୋଧ୍ୟାର ନବାବ ଓ୍ୱାଜିର, ପାଟନା ଅବରୋଧ କରିବାରୁ କ୍ଲାଇବ ଖ୍ରୀ ୧୭୫୮ ରେ ସେମାନଙ୍କୁ ପରାସ୍ତକଲେ । ଉକ୍ତ ବର୍ଷ " କର୍ଣ୍ଣେଲ୍ ଫର୍ଡ " ଙ୍କୁ ଦକ୍ଷିଣକୁ ପଠାଇ ଫରାସିମାନଙ୍କଠାରୁ ମଛିଲି ପଟନ ନାମକ ସ୍ଥାନ ଅଧିକାର କରିଲେ ଓ ସମସ୍ତ ଉତ୍ତର ସରକାରରେ ବ୍ରିଟିଶ ଅଧିପତ୍ୟ ସ୍ଥାପନ କଲେ । କ୍ଲାଇବ, ଚିନସୁରାର " ଡ଼ଚ ଉପନିବେଶ " ଆକ୍ରମଣ କରି ଅଧିକାର କଲେ ।

୨ ୟ ଶାସନ — ( ୧୭୬୫ — ୧୭୬୭ ) କ୍ଲାଇବ ୧୭୬୫ ରେ ଭାରତ ବର୍ଷକୁ ଆସିଥିଲେ, ଏହି ସମୟରେ ସେ ଦୁଇଗୋଟି ପ୍ରଧାନ କାର୍ଯ୍ୟ କରିଥିଲେ ।

କମ୍ପାନୀର କର୍ମଚାରୀମାନଙ୍କର ଅଭ୍ୟାସ ସଂଶୋଧନ ଓ ଧୃତରାଳିକା ପ୍ରାୟ ନବାବଙ୍କୁ ଅବାଣୀତ କରି ଇଂରେଜମାନଙ୍କ ହସ୍ତକୁ ସମସ୍ତ କ୍ଷମତା ଆଣିବାକୁ ବିଶେଷ ଯତ୍ନକରିଥିଲେ ।

ଦେୱାନିମଞ୍ଜୁର—କ୍ଲାଇବ ଏଲାହାବାଦକୁ ଯାଇଣ୍ଡକରି ଅଯୋଧ୍ୟାର ନବାବ ଓ୍ୱଜିରଙ୍କ ସଙ୍ଗେ ଏହିରୂପ ବନ୍ଦୋବସ୍ତ କଲେ ଯେ

ଉଜିର ଅଯୋଧ୍ୟା ଫେରପାଇ ଇଂରେଜମାନଙ୍କୁ ୫ ଲକ୍ଷ ପାଉଣ୍ଡ ଯୁଦ୍ଧ ଖର୍ଚ୍ଚ ଦେବେ । ସାହାଆଲମ ଏଲାହାବାଦ ଓ କୋରାପ୍ରଦେଶ ପୁନଃ ପ୍ରାପ୍ତହୋଇ କମ୍ପାନୀଙ୍କୁ ବଙ୍ଗ , ବିହାର , ଓ ଓଡ଼ିଶ୍ୟାର ଦେଓ୍ୱାନୀ ଶାସନ ଭାର ପ୍ରଦାନ କଲେ । ୧୭୬୬ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ମୁରଶିଦାବାଦ ନବାବଙ୍କୁ ବାର୍ଷିକ ବୃତ୍ତି ୬୦ ଲକ୍ଷ ଟଙ୍କା ଓ ସମ୍ରାଟଙ୍କୁ ବଙ୍ଗଳାର କର ସ୍ୱରୂପ ୮୦ ଲକ୍ଷ ଟଙ୍କା ଦେବାକୁ ସ୍ୱୀକୃତ ହେଲେ । କମ୍ପାନୀ ନୌକରମାନେ ସାମାନ୍ୟ ବେତନ ପାଉଥିଲେ ସୁତରାଂ ସୈନ୍ୟ ଓ ଦେଓ୍ୱାନୀ ବିଭାଗୀୟ କର୍ମ-ଚାରୀମାନେ ଦେଶୀୟ ରାଜାମାନଙ୍କ ଠାରୁ ପୁରସ୍କାର , ଘୋଷ , ଗ୍ରହଣ କରୁଥିଲେ , ନତୁବା ଗୁପ୍ତ ଭାବରେ ବାଣିଜ୍ୟ କରିବାକୁ ଛାଡୁନଥିଲେ । କିନ୍ତୁ ତାହା ନୋହିବା ନିମନ୍ତେ କ୍ଲାଇବ ସେମାନଙ୍କର ବେତନ ବୃଦ୍ଧି କରିଦେଇ ଥିଲେ ଦେଓ୍ୱାନୀ ପ୍ରାପ୍ତି ଦ୍ୱାରା ଇଂରେଜମାନେ କର ପ୍ରାପ୍ତ ହେଲେ । ଓ ସୈନ୍ୟ ରକ୍ଷାଭାର ଗ୍ରହଣ କଲେ ।

ଫୌଜଦାରି ମୋକଦ୍ଦମାର ବିଚାର କ୍ଲାଇବ ସ୍ୱୟଂ ସମ୍ପାଦନ କରୁଥିଲେ କ୍ଲାଇବଙ୍କ ଏହି ନିୟମରେ ଶାସନ କାର୍ଯ୍ୟ ସୁବିଧା ନୋହି ବରଂ ବିଶୃଙ୍ଖଳା ହେଉଥିଲା । ଗଭର୍ଣ୍ଣର ଓ୍ୱାରନ୍‌ହେଷ୍ଟିଂସ ତାହା ସଂଶୋଧନ କଲେ ।

ଛାତ୍ରମାନଙ୍କ ବୋଧ ସୌକର୍ଯ୍ୟାର୍ଥେ ଗବର୍ଣ୍ଣରମାନଙ୍କ ଆଗମନ ସମୟ ନିର୍ଦ୍ଦିଷ୍ଟ ପତ୍ର ଖଣ୍ଡିଏ ଏଠାରେ ପ୍ରଦତ୍ତ ହେଲା । *

| ଗବର୍ଣ୍ଣରଙ୍କ ନାମ , | ମାସ | ମଶିହା । |
|---|---|---|
| ୧ ଓ୍ୱାରନହେଷ୍ଟିଂସ | ଏପ୍ରେଲ | ସନ ୧୮୭୩ |
| ୨ ଲର୍ଡକର୍ଣ୍ଣଓ୍ୱାଲିସ | ସେପ୍ଟେମ୍ବର | ୧୭୮୬ |
| ୩ ସରଜନସୋର ... | ଅକ୍ଟୋବର ... | ୧୭୯୩ |

* ଗବର୍ଣ୍ଣର ଜେନେରଲମାନଙ୍କ କାର୍ଯ୍ୟ ବିବରଣୀପରେ ଲେଖା ଯାଉଅଛି ।

| | | |
|---|---|---|
| ୪ ମାର୍କୁଇସଓ୍ୱେଲସଲି | ମଇ ... | ୧୭୯୮ |
| ୫ ଲର୍ଡକର୍ଣ୍ଣଓ୍ୱାଲିସ | ଅଗଷ୍ଟ | ୧୮୦୫ |
| ୬ ସରଜର୍ଜବାର୍ଲୋ | ଅକ୍ଟୋବର | ୧୮୦୫ |
| ୭ ଲର୍ଡମିଣ୍ଟୋ | ଜୁଲାଇ ... | ୧୮୦୭ |
| ୮ ମାର୍କୁଇସଅବ୍ହେଷ୍ଟିଂସ ... | ଅକ୍ଟୋବର | ୧୮୧୪ |
| ୯ ଲର୍ଡଆମହଷ୍ଟ ... | ଅଗଷ୍ଟ | ୧୮୨୩ |
| ୧୦ ଲର୍ଡଉଇଲ୍ୟମବେଣ୍ଟିକ , | ଜୁଲାଇ | ୧୮୨୮ |
| ୧୧ ଲର୍ଡଅକଲାଣ୍ଡ | ମାର୍ଚ୍ଚ | ୧୮୩୬ |
| ୧୨ ଲର୍ଡଏଲେନବରା | ଫେବ୍ରୁୟାରି ... | ୧୮୪୨ |
| ୧୩ ସରହେନେରିହାର୍ଡିଞ୍ଜ | ଜୁଲାଇ | ୧୮୪୪ |
| ୧୪ ଲର୍ଡଡେଲହାଉସ ... | ଜାନୁଏରୀ | ୧୮୪୮ |
| ୧୫ ଲର୍ଡକ୍ୟାନିଂ | ଫେବ୍ରୁୟାରି ... | ୧୮୫୬ |
| ୧୬ ଲର୍ଡଏଲଗିନ୍ | ଜୁନ୍ | ୧୮୬୨ |
| ୧୭ ସରଜନଲରେନ୍ସ | ଜାନୁଏରି .... | ୧୮୬୪ |
| ୧୮ ଲର୍ଡମେଓ ... | ଜାନୁଏରି | ୧୮୬୯ |
| ୨୦ ଲର୍ଡନର୍ଥବ୍ରୁକ୍ | ମଇ | ୧୮୭୨ |
| ୨୧ ଲର୍ଡଲିଟନ | ଏପ୍ରିଲ | ୧୮୭୬ |
| ୨୨ ଲର୍ଡରିପନ | ଜୁନ | ୧୮୮୦ |
| ୨୩ ଲର୍ଡଡଫରିନ | ଡିସେମ୍ବର ... | ୧୮୮୪ |
| ୨୪ ଲର୍ଡଲାନ୍ସଡାଉନ ... | " | ୧୮୮୮ * |

ଇଂରେଜମାନେ ଯେଉଁ ଅବ୍ଦରେ ଯେଉଁଯେଉଁ ସ୍ଥାନମାନ ଯାହାଠାରୁ ପ୍ରାପ୍ତ ହୋଇଥିଲେ ତାହାର ଗୋଟିଏ ସଂକ୍ଷିପ୍ତ ତାଲିକା ଏଠାରେ ପ୍ରଦତ୍ତ ହେଲା ।

* ଲର୍ଡଲାନ୍ସଡାଉନ ଭାରତର ବର୍ତ୍ତମାନ୍ ଶାସନକର୍ତ୍ତା ଅଟନ୍ତି ।

| ଅବ୍ଦ | ଯାହାଙ୍କଠାରୁ ପ୍ରାପ୍ତ । | ସ୍ଥାନର ନାମ । |
|---|---|---|
| ୧୬୫୭ | ବଙ୍ଗଳାର ନବାବ ... | ଚବ୍ବିଶ ପରଗଣା ପ୍ରଭୃତି |
| ୧୭୫୯ | ନିଜାମ | ମଛଲିପଟ୍ଟନ |
| ୧୭୬୦ | ବଙ୍ଗଳାର ନବାବ ... | ବର୍ଦ୍ଧମାନ, ମେଦନାପୁର ଚଟ୍ଟଗାଁ, |
| ୧୭୬୫ | ମୋଗଲସମ୍ରାଟ | ବଙ୍ଗଳା ଓ ବେହାର |
| ୧୭୬୬ | ନିଜାମ ... | ଉତ୍ତର ସରକାର |
| ୧୭୭୫ | ଅଯୋଧ୍ୟାର ଉଜିର ... | ବାରାଣସୀର ଜମିଦାରୀ |
| ୧୭୯୯ | ଟିପୁସୁଲତାନ | କୋଇମ୍ବାଟୁର, କାନଡ଼ା |
| ,, | ତାଞ୍ଜୋରରାଜା , | ତାଞ୍ଜୋର |
| ୧୮୦୧ | କର୍ଣ୍ଣାଟର ନବାବ | କର୍ଣ୍ଣାଟ |
| ,, | ପେଶବା | ବୁନ୍ଦେଲଖଣ୍ଡ |
| ୧୮୦୩ | ବେରାର ରାଜା | କଟକ ଓ ବେରାର |
| ୧୮୦୫ | ଗୁଇକୁଆଁର ... | ଗୁଜରାଟର ଅନ୍ତର୍ଗତ ଜିଲ୍ଲା |
| ୧୮୧୭ | ଗୁଇକୁଆଁର ... | ଅହମ୍ମଦାବାଦ |
| ୧୮୧୮ | ହୁଲକାର | ଖାନ୍ଦେଶ ଓ ମାଲବ ପ୍ରଭୃତି |
| ,, | ବେରାରରାଜା | ନର୍ମ୍ମଦା ତୀରସ୍ଥ ଜିଲ୍ଲା |
| ୧୮୨୨ | ନିଜାମ ... ... | ବିଜାପୁର ଓ ଅହମଦନଗର |
| ୧୮୩୪ | କୁର୍ଗିରାଜା | କୁର୍ଗି |
| ୧୮୪୫ | ଦିନେମାର | ଶ୍ରୀରାମପୁର ( କଲ୍ୟ ) |
| ୧୮୪୯ | ଶୀଖ | ପଞ୍ଜାବ |
| ୧୮୫୩ | ରାଜାରମୃତ୍ୟୁ | ନାଗପୁର |
| ୧୮୫୬ | ଅଯୋଧ୍ୟା ରାଜା ... | ଅଯୋଧ୍ୟା (ବୃଟିଶ ରାଜ୍ୟଭୁକ୍ତ) |
| ୧୮୮୬ | ବ୍ରହ୍ମପତି | ବ୍ରହ୍ମଦେଶ ,, |

## ୨ୟ ଅଧ୍ୟାୟ ।

### ୱାରନ ହେଷ୍ଟିଂସ । ( ଖ୍ରୀ ୧୭୭୨ — ୧୭୮୫ )

ଖ୍ରୀ ୧୭୪୯ , ୧୮ ବର୍ଷ ବୟସରେ ସାଧାରଣ କେରାଣୀ ସ୍ୱରୂପ ଆସି କେତେ ଦିନାନ୍ତେ ମୁର୍ଶିଦାବାଦରେ ରେସିଡେଣ୍ଟ, ତତ୍ପରେ ୧୭୬୮ ସାଲରେ କୌନ୍‌ସିଲର ମେମ୍ବର, ୧୭୭୨ ରେ ଗବର୍ଣ୍ଣର ହେଲେ । ଏହାଙ୍କ ସମୟରେ ଭୂମିର ରାଜସ୍ୱ ବନ୍ଦୋବସ୍ତ, କଲିକତାରେ ଦେଓ୍ୱାନୀ ଫୌଜଦାରୀ ଅଦାଲତ ସ୍ଥାପନ, ହୋଇଥିଲା । ହେଷ୍ଟିଂସ ମାଦ୍ରାସା କଲେଜର ସ୍ଥାପୟିତା ଅଟନ୍ତି । ୧୭୭୪ ରେ ସେ ଗବର୍ଣ୍ଣର ଜେନେରଲ ହୋଇଥିଲେ । ଏହି ସମୟରେ ନନ୍ଦକୁମାର ନାମକ ଜଣେ ବ୍ରାହ୍ମଣ ହେଷ୍ଟିଂସ ଉତ୍କୋଚଗ୍ରାହୀ ଇତ୍ୟାଦି ଅଭିଯୋଗ କରିବାରୁ ମେମ୍ବରମାନେ ହେଷ୍ଟିଂସଙ୍କ ଠାରୁ ୩୦ । ୪୦ ଲକ୍ଷ ଟଙ୍କା ଫେରାଇ ନେବାକୁ କହିଲେ । ମାଫ ଜାଲ ଅପରାଧରେ ଅଳ୍ପ କାଳ ମଧ୍ୟରେ ନନ୍ଦକୁମାରଙ୍କ ପ୍ରାଣ ଦଣ୍ଡ ହେଲା । ୧୭୬୯ ରେ ବାରାଣସୀ ରାଜା ଚୈତସିଂହଙ୍କ ଉପରେ ଅଧିକ କର ନେବାର ଉଦ୍ୟୋଗୀ ହେଲେ, ଏହି ରାଜା ବିଦ୍ରୋହୀ ହୋଇ ପଳାୟନ କଲେ । ସେ ଅଯୋଧ୍ୟା ନବାବଙ୍କ ମାତା ଓ ସ୍ତ୍ରୀମାନଙ୍କର ସର୍ବସ୍ୱ ହରଣ କରିଥିଲେ । ହେଷ୍ଟିଂସ ୧୭୮୨ ରେ ବାଇସନ୍ଧିରେ ମରହଟ୍ଟା ଯୁଦ୍ଧ ଓ ୧୭୮୪ ରେ ମଙ୍ଗଲୋର ସନ୍ଧି ଦ୍ୱାରା ୨ ୟ ମହୀଶୂର ଯୁଦ୍ଧ ଶେଷ କରି ୧୭୮୫ ରେ କାର୍ଯ୍ୟ ତ୍ୟାଗ ପୂର୍ବକ ସ୍ୱଦେଶକୁ ଯାତ୍ରା କଲେ । ହେଷ୍ଟିଂସ ଅତ୍ୟାଚାରୀ ବୋଲି ପାର୍ଲିଅମେଣ୍ଟରେ ଅଭିଯୁକ୍ତ ହୋଇଥିଲେ ମାତ୍ର ଦୋଷ ପ୍ରମାଣ ହେଲା ନାହିଁ ।

ମେକ୍‌ଫାର୍ସିନ — ( ଖ୍ରୀ ୧୭୮୫ — ୧୭୮୬ ) ଏ ଗବର୍ଣ୍ଣର ଜେନେରଲଙ୍କ ସଭାର ପ୍ରଧାନ ମେମ୍ବର; କେବଳ କର୍ଣ୍ଣଓ୍ୱାଲିସଙ୍କ ଆଗମନ ପର୍ଯ୍ୟନ୍ତ ବ ୧ । ୮ ମ ସ ପ୍ରତିନିଧି କାର୍ଯ୍ୟ କରିଥିଲେ ।

କର୍ଣ୍ଣୱାଲିସ୍— ( ୧୭୮୬-୧୭୯୩ ) ମେକ୍ଫାର୍ସନଙ୍କ ପରେ ୱାଲିସ୍ ଗଭର୍ଣ୍ଣର ଜେନେରେଲ୍ ହେଲେ । ଏହାଙ୍କ ସମୟରେ ଯୁଡିସିୟଲ୍ ସଂଶୋଧନ , ଚିରସ୍ଥାୟୀ ବନ୍ଦୋବସ୍ତ ହୋଇଥିଲା । ଏହାଙ୍କ ଆଗମନ ପରେ ୩ ୟ ମହୀଶୂର ଯୁଦ୍ଧ ଆରମ୍ଭ ହୋଇ ୧୭୯୨ ରେ ସନ୍ଧି ଦ୍ୱାରା ଶେଷ ହେଲା । ସେ ୧୭୯୩ ରେ ସ୍ୱଦେଶ ଯାତ୍ରା କରି ୧୮୦୫ ରେ ଅନ୍ୟଥରେ ଜେନେରେଲ୍ ହୋଇ ଭାରତକୁ ଆସି ପ୍ରାଣତ୍ୟାଗ କଲେ । ମରହଟ୍ଟାମାନଙ୍କ ପ୍ରତି ସମଦକ୍ଷ ବ୍ୟବହାର କରିବା ଏବଂ ଦେଶୀୟମାନେ ଅତ୍ୟାଗ୍ରହୀ ନହେବା ବିଷୟରେ ଦୃଷ୍ଟି କରୁନଥିଲେ । ଓ୍ୱାଲିସ୍ ସୁଚତୁର , ଦକ୍ଷ , ଓ ରଣ ପଣ୍ଡିତ ଥିଲେ ।

ସରଜନସୋର୍ — ( ୧୭୯୩--୧୭୯୮ ) କର୍ଣ୍ଣୱାଲିସଙ୍କ ପର ଜେନେରଲ୍ ହୋଇ ୧୭୯୭ ରେ ଅଯୋଧ୍ୟା ନବାବ ଉଜିର ଅଲ୍ଲିଙ୍କୁ ପଦଚ୍ୟୁତ କରି ତାହାଙ୍କ ଭ୍ରାତା ସଦତଅଲ୍ଲିଙ୍କୁ ଉକ୍ତ ପଦ ପ୍ରଦାନ କରି ସ୍ୱଦେଶକୁ ଯାତ୍ରା କଲେ । ଏ ଅତ୍ୟନ୍ତ ଶାନ୍ତ ଓ ସତ ସ୍ୱଭାବ ଥିଲେ ।

ଓ୍ୱେଲସଲି— ( ଖ୍ରୀଃ ୧୭୯୮—୧୮୦୫ ) ସୋରଙ୍କ ଉତ୍ତାରେ ଶାସନ କର୍ତ୍ତା ହୋଇ କର୍ଣ୍ଣାଟର ନବାବଙ୍କୁ ବୃତ୍ତି ଦେଇ ସମସ୍ତ ରାଜ୍ୟ ସ୍ୱାଧିକୃତ କଲେ । ୪ର୍ଥ ମହୀଶୂର ଯୁଦ୍ଧ ୨ ୟ ଓ ୩ ୟ ମରହଟ୍ଟା ସଂଗ୍ରାମ ତାହାଙ୍କ ସମୟରେ ଘଟି ଥିଲା ଏହି ଯୁଦ୍ଧରେ କୋଇମ୍ବାଟୁର , କାନାଡା , ଓ୍ୱେନଦ , ବୁନ୍ଦେଲଖଣ୍ଡ , ଓଡ଼ିଶା , ଦିଲ୍ଲୀ ଏବଂ ଗୁଜରାଟର କେତେକାଂଶ ଇଂରେଜ ରାଜ୍ୟଭୁକ୍ତ ହୋଇ ଥିଲା । ସେ ଫୋର୍ଟଉଇଲୟମ କଲେଜ ସ୍ଥାପନ , ଗଙ୍ଗାରେ ସନ୍ତାନ ନିକ୍ଷେପ ନିବାରଣ , ରବିବାରେ କଚେରି ବନ୍ଦ ପ୍ରଥା ଚଳାଇ ଥିଲେ । ଓ୍ୱେଲ ସଲି ସ୍ୱଜାତିର ପ୍ରାଧାନ୍ୟ ଦୃଢ଼ତର କରି ୧୮୦୫

ରେ କାର୍ଯ୍ୟ ଚ୍ୟୁତ ହେଲେ ।

କର୍ଣ୍ଣୱାଲିସ--୧୮୦୫ ରେ ଭାରତକୁ ୨ୟ ବାର ଜେନେରେଲ ପଦରେ ଆଗମନ କରି ସିନ୍ଧିଆ ଓ ହୋଲକାରର ସନ୍ଧି ବନ୍ଧନ ଉଦ୍ୟୋଗୀ ହୋଇ ୧୮୦୬ ରେ ଗାଜିପୁର ଠାରେ ପ୍ରାଣ ତ୍ୟାଗ କଲେ ।

ବାର୍ଲୋ—( ଖ୍ରୀଃ ୧୮୦୫—୧୮୦୬ ) ଗବର୍ଣ୍ଣର ଜେନେରେଲ ହୋଇ ଓ୍ୱେଲେସ୍‌ଲିଙ୍କ ଯୁଦ୍ଧ ଶେଷ କରିଥିଲେ । ରାଜକୀୟ ସମସ୍ତ ଋଣ ଏହାଙ୍କ ଦ୍ୱାରା ପରିଶୋଧ ହୋଇଥିଲା । ଭେଲୋରର ପଲ୍ଟନମାନେ ଏହାଙ୍କ ସମୟରେ ବିଦ୍ରୋହୀ ହୋଇଥିଲେ । ୧୮୦୬ ରେ ବାର୍ଲୋ ସ୍ୱଦେଶ ଯାଇଥିଲେ ।

ଲର୍ଡମିଣ୍ଟୋ—( ଖ୍ରୀ ୧୮୦୬—୧୮୧୨) ବାର୍ଲୋଙ୍କ ପରେ ଭାରତର ଶାସନକର୍ତ୍ତା ହୋଇ ବୁନ୍ଦେଲଖଣ୍ଡରେ ଶାନ୍ତିସ୍ଥାପନ କଲେ । ସେ କାବୁଲ ଅମୀରଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରିଥିଲେ ୧୮୧୦ରେ ଇଂରେଜୀୟ ସୈନ୍ୟ ବିଦ୍ରୋହ, ଦେଶୀୟ ସିପାହୀମାନଙ୍କ ବଳରେ ଦମନ କରିଥିଲେ । ୧୮୧୧ ରେ ଜାବାଦ୍ୱୀପ ଜୟକରି ୧୮୧୨ ରେ ସ୍ୱଦେଶ ଯାଇଥିଲେ । ସେ କମ୍ପାନୀମାନଙ୍କୁ ୨୦ ବର୍ଷ ପାଇଁ ସନନ୍ଦ ପାଦ୍ରୀମାନଙ୍କୁ ଧର୍ମ ପ୍ରଚାରର ଅନୁମତି ଦେଇଥିଲେ । ଶିକ୍ଷା ନିମନ୍ତେ ବର୍ଷକୁ ୨ ବ୍ୟକ୍ତି ହେବାର ନିୟମ ବନ୍ଦୋବସ୍ତ କରିଥିଲେ ।

ଲର୍ଡ ହେଷ୍ଟିଂସ ବା ଲର୍ଡମଏରା (୧୮୧୩-୧୮୨୩) ଜେନେରେଲ ହୋଇ ନେପାଳୀମାନଙ୍କ ସଙ୍ଗେ ଯୁଦ୍ଧର ସମ୍ଭାବନା ଦେଖି ତାହା ଅଭାରଣ ନିମନ୍ତେ ଯତ୍ନବାନ ଅକୃତ କାର୍ଯ୍ୟ ହେଲେ ମାତ୍ର ୧୮୧୬ ରେ ସନ୍ଧି ସ୍ଥିର ହେଲା । ପିଣ୍ଡାରୀମାନେ "ସରକାର" ଲୁଣ୍ଠନ କରିବାକୁ ଯୁଦ୍ଧୋଦ୍ୟମ ହେଲା । ଦେଶୀୟ ରାଜାମାନଙ୍କ ଦ୍ୱାରା କର୍ମ ଚ୍ୟୁତ ପଠାଣ ମାନେ ମଧ୍ୟ ଲୁଣ୍ଠନ କରିବାକୁ ଲାଗିଲେ, ୧୮୧୮

ରେ ପିଣ୍ଡାରୀମାନଙ୍କ ନେତା ଚିତୁସିଂହ ପରାସ୍ତ ହୋଇ ପଳାୟନ କଲେ ବ୍ୟାଘ୍ର ଦ୍ୱାରା ଭକ୍ଷିତ ହେବାରୁ ପିଣ୍ଡାରୀମାନେ ଦସ୍ୟୁ ବୃତ୍ତି ତ୍ୟାଗ କଲେ । ଖ୍ରୀଃ ୧୮୧୭ ରେ ପେଶୱା ୨ୟ ବାଜିରାଓ ଏବଂ ନାଗପୁର ରାଜା ଅପାସାହେବ ଇଂରାଜଙ୍କ ବିପକ୍ଷ ହୋଇ ରେସିଡେଣ୍ଟଙ୍କୁ ଆକ୍ରମଣ କଲେ, ବାଜି ଓ କିର୍କିରେ ଓ କୋରେଗାଓଁରେ ପରାସ୍ତ ହୋଇ ଇଂରାଜଙ୍କ ଶରଣାଗତ ହେଲେ । ମାତ୍ର ସେ ପଦଚ୍ୟୁତ ହୋଇ ବିଠୁର ନଗରରେ ନଜରବନ୍ଦରେ ରହିଲେ । ଶିବାଜୀଙ୍କର ଏକ ବଂଶଜ ବାଳକ ସିଂହାସନ ଗ୍ରହଣ କଲେ । ଅପାସାହେବ ସିତାବଲଦିରେ ପରାସ୍ତ ଓ ସିଂହାସନ ଚ୍ୟୁତ ହେବାରୁ ତାହାଙ୍କ ପୁତ୍ର ସିଂହାସନ ଗ୍ରହଣ କଲେ । ହେଷ୍ଟିଂସ ହିନ୍ଦୁ ଓ ସ୍କୁଲ କଲେଜ ସ୍ଥାପନ , ସମ୍ବାଦ ପତ୍ର ପ୍ରତି ସ୍ୱାଧୀନତା ପ୍ରଦାନ , ଏବଂ ବାର୍ଷିକ ୨ କୋଟି ଟଙ୍କା କମ୍ପାନୀର ଆୟ ବୃଦ୍ଧି କରିଥିଲେ । ମାନ୍ଦ୍ରାଜରେ ପଞ୍ଚାୟତ ଓ ବୋମ୍ବାଇରେ ସୁପ୍ରିମକୋର୍ଟର ସୃଷ୍ଟି କରିଥିଲେ । ହେଷ୍ଟିଂସ କାର୍ଯ୍ୟଦକ୍ଷ ଓ ପରିଶ୍ରମୀ ଥିଲେ । ଏହାଙ୍କ ରାଜତ୍ୱ ପରେ ଏଡାମସ୍ କେତେକ ଦିନ ଏକଟିଂ କାର୍ଯ୍ୟ କରିଥିଲେ ।

ଲର୍ଡ ଆମହର୍ଷ୍ଟ—ସେ ୧୮୨୩—୧୮୨୮ ପର୍ଯ୍ୟନ୍ତ ଜେନେରେଲ ହୋଇଥିଲେ । ଏହାଙ୍କ ସମୟରେ ୧ମ ବ୍ରହ୍ମଯୁଦ୍ଧ, ୨ୟ ଭରତପୁର ଅକ୍ରମଣ ଏହି ଦୁଇ ପ୍ରଧାନ ଘଟଣା ଘଟିଥିଲା ।

ଲର୍ଡବେଣ୍ଟିଙ୍କ—ଲର୍ଡ ଆମହର୍ଷ୍ଟଙ୍କ ପରେ ୧୮୨୮ ରୁ ୧୮୩୫ ପର୍ଯ୍ୟନ୍ତ ଲର୍ଡବେଣ୍ଟିଙ୍କ ଗଭର୍ଣ୍ଣର ଜେନେରଲ ହେଲେ ।

ସେ ଭେଲୋର ବିଦ୍ରୋହ ସମୟରେ ମାନ୍ଦ୍ରାଜର ଶାସନ କର୍ତ୍ତା ଥିଲେ । ତାଙ୍କର ଏହି ୭ ବର୍ଷ ଶାସନରେ ଉତ୍ତମ ଶାନ୍ତି ଥିଲା । ତାଙ୍କ ସମୟରେ ଭାରତର ଅନେକ ଉନ୍ନତି ହୋଇଥିଲା ।

ପ୍ରଧାନ ଘଟଣା — ( ୧ ) ଶାସନର ସଂଶୋଧନ , [ ୨ ] ସତୀ

ଦାହ ପ୍ରଥା ନିବାରଣ । ( ୩ ) ଠଗମାନଙ୍କର ଦମନ । [ ୪ ]
ମହୀଶୂରର ବନ୍ଦୋବସ୍ତ, ଶିକ୍ଷୋନ୍ନତି, ଇତ୍ୟାଦି ପ୍ରଶଂସନୀୟ
କାର୍ଯ୍ୟ କରିଥିଲେ ।

ଶାସନସଂଶୋଧନ - ଗଭର୍ଣ୍ଣମେଣ୍ଟ ଗଠିତ କମକରିଦେଲେ, ଅ
ନେକ ଜମି ଲାଖରାଜଥିବାରୁ ସେଥିନିମନ୍ତେ ଏହିମର୍ମରେ ଏକ
ଆଇନ ପାଶକଲେ । ଯଥା, "ଦଲିଲବ୍ୟତୀତ କାହାର ଜମୀଲାଖ
ରାଜରେ ବୃଦ୍ଧି ହେବନାହିଁ," ସେମାନଙ୍କାରରେ ଅଫିସରଙ୍କର
ସ୍ଥାପନ କରିଥିଲେ ।

ସତୀଦାହ ନିବାରଣ - ସ୍ୱାମୀମୃତ୍ୟୁପରେ ସ୍ତ୍ରୀମାନେ ଚିତାରେ
ଦଗ୍ଧକରନ୍ତି । କିନ୍ତୁ ତାହା ଆଇନ ବିରୁଦ୍ଧବୋଲି ବନ୍ଦକରିବାକୁ
ଘୋଷଣା କଲେ ।

ଠଗଦମନ — କାଳୀ ଉପାସକ ଠଗମାନେ ଏକଦେଶ ପ୍ରତିବର୍ଷ
ପ୍ରାୟ ୧୦ ହଜାର ଲୋକର ପ୍ରାଣବଧ କରୁଥିଲେ, କିନ୍ତୁ ବେଣ୍ଟିଙ୍କ
ସେମାନଙ୍କର ଏହି କୁଟିଳ ପ୍ରବୃତ୍ତି ଅବଗତହୋଇ କାପ୍ତେନ ସ୍ଲି
ମେନଙ୍କ ସାହାଯ୍ୟରେ ଠଗମାନଙ୍କୁ ଦମନକଲେ ।

ନୂତନ ସନନ୍ଦ - ୧୮୩୩ ରେ ଇଷ୍ଟଇଣ୍ଡିଆ କମ୍ପାନି ବ ୨୦ ବର୍ଷ
ନିମନ୍ତେ ସନନ୍ଦପତ୍ର ଏହିସର୍ତ୍ତରେ ପ୍ରାପ୍ତହେଲେଯେ କମ୍ପାନି
ଏକାବେଳକେ ବାଣିଜ୍ୟ ପରିତ୍ୟାଗ କରିବେ, ଏବଂ ଇଉରୋପୀ
ୟପ୍ରଜାଙ୍କୁ ଭାରତରେ ସ୍ଥାନଦେବେ ।

କୁର୍ଗଆକ୍ରମଣ — ଖ୍ରୀଃ ୧୮୬୪ ରେ କୁର୍ଗରାଜାଙ୍କ ଅତ୍ୟାଚାର
ଓ ଅବଗୁଣ ହେତୁତଃ କୁର୍ଗ ଇଂରେଜରାଜ୍ୟଭୁକ୍ତହେଲା, ରାଜା
ପେନସନ ପ୍ରାପ୍ତହେଲେ ;

ମହୀଶୂର ବନ୍ଦୋବସ୍ତ — ଖ୍ରୀଃ ୧୮୩୦ ରେ ମହୀଶୂରରେ
ଗୋଳମାଳ ହେବାରୁ ବେଣ୍ଟିଙ୍କ ସମସ୍ତରାଜ୍ୟର ଶାସନଭାର

ସ୍ୱହସ୍ତରେ ରଞ୍ଜି॰, ଗ୍ରନ୍ଥାଙ୍କୁ ବୃତ୍ତି ପ୍ରଦାନକଲେ ।

ମେଟ୍‌କାଫ— ବେଣ୍ଟିଙ୍କଙ୍କପର ମେଟକାଫ ( କଲିକତା କାଉନ୍ସିଲ ପ୍ରଧାନମେମ୍ବର ) ଲର୍ଡପଦ ଗ୍ରହଣକଲେ, ସେହିବର୍ଷରେ ମୁଦ୍ରାଯନ୍ତ୍ର ପ୍ରତିସ୍ୱାଧୀନତା ଦେଇଥିଲେ । ସ୍ୱଦେଶୀୟମାନେ ତାଙ୍କର ସ୍ମରଣରେ ମୋହିତ ହୋଇ " ମେଟକାଫହଲ " ନାମରେ ଗୋଟିଏ ଅଟ୍ଟାଳିକା ନିର୍ମାଣ କରିଥିଲେ ।

ଲର୍ଡ ଅକଲଣ୍ଡ - ତଦନନ୍ତର ଲର୍ଡ ଅକଲଣ୍ଡ ୧୮୩୮.୧୮୪୨ ପର୍ଯ୍ୟନ୍ତ ଭାରତ ଶାସନକଲେ । ୧ମ ଅଫଗାନିସ୍ଥାନର ଯୁଦ୍ଧ ଏହାଙ୍କ ସମୟର ପ୍ରଧାନଘଟଣା ଅଟେ, । ଋଷିୟାଦୂତ ପାରସ୍ୟ ରାଜାଙ୍କୁ ହିରାଟ ଅଧିକାରକରିବାକୁ ପରାମର୍ଶଦେବାରୁ ଇଂରାଜମାନେ ମନେକଲେ ଯେ ଋଷିୟା ପାରଶ୍ୟରାଜ ଅଫଗାନିସ୍ଥାନ ଅଧିକାରକରି କାଳେଭାରତରେ ଗୋଳମାଳକରନ୍ତି, । ଏହିସମୟରେ ଦୋସ୍ତମହମ୍ମଦ, ସାହାସୁଜାଙ୍କୁ ପଦଚ୍ୟୁତକରି କାବୁଲରେ ରାଜତ୍ୱ କରୁଥିଲେ ସାହାସୁଜା ଭାରତରେ ଇଂରାଜଙ୍କ ବୃତ୍ତିଭୋଗୀହୋଇ ବାସକରୁଥିଲେ, ଅକଲଣ୍ଡ ମନେକଲେ ଯଦି ଦୋସ୍ତମହମ୍ମଦକୁ ହସ୍ତଗତ କରିଯାଇପାରେ ତେବେ ଋଷିୟା ଅଫଗାନିସ୍ଥାନରେ ରହିପାରିବେନାହିଁ, ସେ କାପ୍ତେନବାର୍ଣ୍ଣିଙ୍କୁ ଦୂତରୂପେ ପ୍ରେରଣ କଲେ । ଦୋସ୍ତ ଆପଣା ମିତ୍ରତାର ମୂଲ୍ୟସ୍ୱରୂପ ରଣଜିତସିଂହ ଅଧିକୃତ ପେଶୋର ଅବଶ୍ୟକକଲେ । କିନ୍ତୁ ଗଭର୍ଣ୍ଣର ଜେନେରେଲ ପେଶୋର ଦାନେଅକ୍ଷମହୋଇ ମିଷ୍ଟକଥାରେ ଦୋସ୍ତଙ୍କୁ ଭୁଲାଇବାକୁ ଦୂତ ପ୍ରେରଣକଲେ । ଦୋସ୍ତ ରୁଷିୟାପରି ପ୍ରବଳ ଶତ୍ରୁବିରୁଦ୍ଧରେ କର୍ଣ୍ଣପାତ କଲେନାହିଁ, ଅକଲଣ୍ଡ ଦୋସ୍ତଙ୍କୁ ପଦଚ୍ୟୁତକରି ସାହାସୁଜାକୁ ସିଂହାସନଦେବାକୁ କୃତସଂକଳ୍ପହେଲେ । ସୁତରାଂ ଉଭୟପକ୍ଷରେ ତୁମୁଳଯୁଦ୍ଧ ସଂଘଟନହେଲା ।

ଅକଲଣ୍ଡ ରଣଜିତ ସିଂହଙ୍କୁ ସଦଳ ପରଭୃତ୍ତ କର ୨୧ ହଜାର

ସନ୍ୟ ଏଲ୍‌ଫିନଷ୍ଟନ , ପୋଟିଞ୍ଜର , ଓ ନେକେନେଟେନ୍‌ଟ, ପ୍ରଭୃତି ସେନାପତି ଅଧୀନରେ ବୋଲନଗିରସଙ୍କଟ ଦେଇ ଅଫଗାନ ସ୍ଥାନରେ ପ୍ରବେଶ କରିବାକୁ ଅନୁମତି ପ୍ରଦାନ କଲେ । ଇଂରେଜ ମାନେ କାନ୍ଦାହାରରେ ପ୍ରବେଶମାତ୍ରେ କାନ୍ଦାହାର ବାସୀମାନେ ଆତ୍ମ ସମର୍ପଣ କଲେ । ଇଂରେଜମାନେ ଗଜନି ଅଧିକାର କରି କାବୁଲ ଯାତ୍ରାକଲେ । କତିପଦିନପରେ ଦୋସ୍ତଇଂରେଜମାନଙ୍କ ସହତେ ହୋଏ ଯୁଦ୍ଧକରି ସ୍ୱେଚ୍ଛାକ୍ରମେ ଆତ୍ମସମର୍ପଣକଲେ । ଇଂରେଜ ସୈନ୍ୟ ମଧ୍ୟରୁ ୧୦ ହଜାର ଆଫଗାନ ସ୍ଥାନରେ ରହି ଅବଶିଷ୍ଟ ପ୍ରତ୍ୟା ଗମନ କଲେ । ଅଫଗାନମାନେ ଅତୀବ ସ୍ୱାଧୀନତା ପ୍ରିୟ ଥିଲେ, ଦୋସ୍ତଙ୍କ ବୀରପୁତ୍ର ଅକବର ସ୍ୱଦେଶୋଦ୍ଧାରରେ କୃତସଙ୍କଳ୍ପ ହେଲେ , ସେ ସୈନ୍ୟ ସଂଗ୍ରହ କଲେ , ପୋଟିଞ୍ଜର ଏସମ୍ବାଦ କଲ୍‌କତାରେ ହଅନ୍ତେ କେହି କର୍ଣ୍ଣପାତ କଲେନାହିଁ , ଅଫଗାନ ସ୍ଥାନରେ ସମରାଗ୍ନି ପୁନଃ ପ୍ରଜ୍ଜ୍ୱଳିତ ହେଲା । ଅଫଗାନମାନେ କାବୁଲ ଆକ୍ରମଣକଲେ । ପୋଲିଟିକେଲ୍ ଏଜେଣ୍ଟ ବର୍ଣ୍ଣସ ସାହେବଙ୍କ ହତ୍ୟା କଲେ । ସେନାପତି ଏଲ୍‌ଫିନେଷ୍ଟନ ରୁଗ୍ଣ ହୋଇଥିଲେ । ସହକାରୀ ସେଲଟନ କହିଲେ କାବୁଲ ପରିତ୍ୟାଗ କରି ଜାଲାଲା ବାଦ ଯିବା କର୍ତ୍ତବ୍ୟ , ମେକ୍‌ଟନ କହିଲେ କାବୁଲରେ ଥିବା ଉଚିତ । ଯୁଦ୍ଧକ୍ଷେତ୍ରରେମତଭେଦ ଉପସ୍ଥିତ ହେଲା ଅନ୍ୟପକ୍ଷେ ହନ ୨ ବିଦ୍ରୋହାନଳ ବୃଦ୍ଧିହେଲା ମେକ୍‌ନଟନ ସାହେବ ସନ୍ଧି କରିବାକୁ ଅକବରଙ୍କ ଶିବିରକୁ ଗମନ କଲେ , କିନ୍ତୁ ବିଦ୍ରୋହୀ ମାନେ ତାଙ୍କୁ ହତ୍ୟାକଲେ , ଇଂରେଜମାନେ କାବୁଲ ପରିତ୍ୟାଗ କଲେ , ସାହା ସୁଜା ମଧ୍ୟ ବିଦ୍ରୋହୀମାନଙ୍କ ଦ୍ୱାରା ବଧ ହେଲେ ! ଇଂରାଜମାନଙ୍କ ଠାରେ ପାଥେୟସମ୍ବଳ ନଥିଲା । ମଧ୍ୟେ ୨ ବିଦ୍ରୋହୀମାନେ ସେମାନଙ୍କୁ ଆକ୍ରମଣ କରିବାକୁ ଲାଗିଲେ ବୃଦ୍ଧକାବୁଲ

ଗିରି ସଙ୍କଟରେ ୫ ହଜାର ସୈନ୍ୟ ହତହେଲେ । ଏଲ୍‌ଫିନଷ୍ଟୋନ ଓ କେତେଜଣ ବଡ଼ ଅକବରଙ୍କ ଠାରେ ଅସ୍ତ୍ର ସମର୍ପଣ କଲେ । ଓ ଦୁର୍ଗରେ ବନ୍ଦ ହେଲେ । ଇଂରାଜମାନଙ୍କ ଦୁର୍ଗତିର ସୀମା ରହିଲା ନାହିଁ , ଏହି ଇଂରାଜ ସୈନ୍ୟ ମଧ୍ୟରେ କେବଳ ମାତ୍ର ଡାକ୍ତର ବ୍ରାଇଡନ ଜେଲାଲାବାଦରେ ଏହି ସମ୍ବାଦ ଦେବାକୁ ପହଞ୍ଚି-ଥିଲେ । ଏଥିମଧ୍ୟରେ ଏଲେନବରା ଭାରତକୁ ଗବର୍ଣ୍ଣମେଣ୍ଟ ହୋଇ ଆସିଥିଲେ , ସେଲ ଜେଲାଲାବାଦରେ ଓ ନଟ କାନ୍ଦାହାରରେ ବିଦ୍ରୋହୀମାନଙ୍କ ବିପକ୍ଷରେ ଆତ୍ମରକ୍ଷା କଲେ । ପୋଲକ ଜେଲାଲାବାଦ ଅଧିକାର କରି କାବୁଲକୁ ରୱାନା ହୋଇ ପଥମଧ୍ୟେ ବିଦ୍ରୋହୀ ପରାଭୂତ କରି କାବୁଲରେ ପହଞ୍ଚିଲେ । ନଟ ପଥମଧ୍ୟେ ଗଜନି ଅଧିକାର କରି ପୋଲକ ସଙ୍ଗେ ମିଳିତ ହେଲେ ଇଂରେଜମାନେ କାବୁଲର ଦୋକାନ ସକଳ ଧ୍ୱଂସକରି ବନ୍ଦୀମାନଙ୍କୁ ଖଲାସ ଦେଇ ଭାରତକୁ ପୁନରାଗମନ କଲେ ଏବଂ ସ୍ଥିର କଲେ ଯେ ଆଉ ଅଫଗାନ ସ୍ଥାନକୁ ଯୁଦ୍ଧ କରି ଯିବେନାହିଁ ଦୋସ୍ତମହମ୍ମଦଙ୍କୁ ତାଙ୍କର ରାଜ୍ୟ ପ୍ରତ୍ୟର୍ପଣ କଲେ ।

ଲର୍ଡ ଏଲେନବରା — ଅକଲଣ୍ଡଙ୍କ ଉତ୍ତାରେ ଭାରତରେ ଦୁଇବର୍ଷ ଗବର୍ଣ୍ଣର ଜେନେରଲ ହେଲେ । ଏହାଙ୍କ ସମୟରେ ( ୧ ) ଅଫଗାନ ଯୁଦ୍ଧ ଶେଷ । ( ୨ ) ସିନ୍ଧୁଜୟ । ( ୩ ) ଗୋଆଲିୟର ଯୁଦ୍ଧ , ହୋଇଥିଲା ।

ସିନ୍ଧୁଜୟ — କାବୁଲ ଯୁଦ୍ଧ ସମୟରେ ସିନ୍ଧୁର ମୁସଲମାନ , ଶାସନକର୍ତ୍ତା ( ଅମିର ) ଇଂରେଜମାନଙ୍କ ସହିତ ବିଦ୍ରୋହାରମ୍ଭ କଲେ । ଅତଏବ ଏଲେନବରା , ସର୍‌ଚାର୍ଲସ ନେପିଅରଙ୍କୁ ଅମିରଙ୍କୁ ଦମନ କରିବାପାଇଁ ପଠାଇଲେ । ଅମିର୍ ମିଆନୀ ଓ ହାଇଦ୍ରାବାଦ ଯୁଦ୍ଧରେ ପରାସ୍ତ ହୋଇ ଦିଲ୍ଲୀରେ ବନ୍ଦୀହେଲେ । ଏହି ସିନ୍ଧୁ

ରାଜ୍ୟ ଇଂରେଜ ସାମ୍ରାଜ୍ୟ ଭୁକ୍ତ ହେଲା ।

ଗୋଆଲିଅର ଯୁଦ୍ଧ — ଖ୍ରୀଃ ୧୮୪୩ ରେ ଯୁବତୀ ରାଣୀ ତାର ଭାଇ ମାମା ସାହେବଙ୍କୁ ରିଜେଣ୍ଟ ସ୍ୱରୂପରେ ଗ୍ରହଣ କରିବାକୁ ଅସ୍ୱୀକାର କରିବାରୁ ଏହି ଯୁଦ୍ଧ ଘଟିଥିଲା ।

ପ୍ରଧାନ ଘଟଣା — ୧୮୪୩ ରେ ଗୋଆଲିଅର ସୈନ୍ୟମାନେ ଇଂରେଜମାନଙ୍କଠାରେ ମହାରାଜପୁର ଓ ପୁନ୍ନିଆଁ ଯୁଦ୍ଧରେ ପରାସ୍ତ ହେଲେ । ପୁନ୍ନିଆ ଯୁଦ୍ଧରେ ଏଲେନବରା ସ୍ୱୟଂ ଉପସ୍ଥିତ ଥିଲେ ।

ଉପସଂହାର — ଏହି ଯୁଦ୍ଧ ଗୋଟିଏ ସନ୍ଧି ଦ୍ୱାରା ଶେଷ ହୋଇ ଥିଲା । ରାଣୀ ପେନ୍‌ସନ ପ୍ରାପ୍ତ ହେଲେ । ଏହି ରାଜ୍ୟରେ ଶାସନ ଭାର ଜଣେ ବ୍ରିଟିଶ ରେସିଡେଣ୍ଟଙ୍କ ଅଧୀନରେ ରହିଲା ।

ଲର୍ଡ଼ ହାର୍ଡିଂ — ( ଖ୍ରୀଃ ୧୮୪୪—୧୮୪୮ ) ଏଲେନ୍ ବରାଙ୍କ ଉତ୍ତାରେ ହାର୍ଡିଂ ଗଭର୍ଣ୍ଣ ଜେନେରଲ ହେଲେ ସେ ବାଧ୍ୟ ହୋଇ ଶିଖମାନଙ୍କ ସଙ୍ଗେ ଯୁଦ୍ଧକରି ସେବ୍ରେଂ ରେ ପରାସ୍ତ କରି ସନ୍ଧି କଲେ ଶିଖ ମନ୍ତ୍ରୀ ଗୋଲାପ ସିଂହ ୧ କୋଟି ଟଙ୍କାରେ କାଶ୍ମୀର ଓ ଜମ୍ମୁ କିଣିକରି ୧୮୪୬ ରେ ସ୍ୱାଧୀନ ରାଜା ହେଲେ । ଏହାଙ୍କ ସମୟରେ ଗଙ୍ଗା ଓ ଯମୁନାର ଖାଲ ଖନନ ରେଲ ଓ ଡାକତାର ସ୍ଥାପନ ଓଡ଼ିଶାସ୍ଥ ଖଣ୍ଡମାନଙ୍କ ନରବଳୀ ନିବାରଣ ଦେଶୀୟମାନଙ୍କୁ ସରକାରୀ ଚାକିରୀ ପ୍ରଦାନ ଇତ୍ୟାଦି ହୋଇଥିଲା ୧୮୪୮ ରେ ସେ ସ୍ୱଦେଶକୁ ପ୍ରସ୍ଥାନ କଲେ ।

ଡେଲହାଉସି ( ଖ୍ରୀଃ ୧୮୪୮— ୧୮୫୬ ) ଏହାଙ୍କ ସମୟରେ ୨ୟ ଶିଖ ଯୁଦ୍ଧ ୨ୟ ବ୍ରହ୍ମ ଯୁଦ୍ଧ ହୋଇଥିଲା ୧୮୪୯ ରେ ଯେ ଶିଖ ଯୁଦ୍ଧ ହୋଇଥିଲା ତହିଁରେ ୨୪୦୦ ଇଂରେଜ କର୍ମଚାରୀଙ୍କ ନାଶ ଓ ୪ ଟା ତୋପନଷ୍ଟ ଏବଂ ଶିଖ ସୈନ୍ୟମାନେ ଗୁଜରାଟରେ ପରାସ୍ତ ହେଲେ ପଞ୍ଜାବ ଇଂରେଜାଧିକୃତ ଦଲିପସିଂହ ୫୮

ବଡାର ପାଣ୍ଡୁରତ୍ତା ପାଇଲେ ।

୧୮୫୨ ର ବ୍ରହ୍ମ ସଂଗ୍ରାମରେ ପେଗୁପ୍ରାନ୍ତସହିତ ଅଧିକାର୍ ଇଂରାଜାଧିକୃତ ହୋଇ ସନ୍ଧି ସ୍ଥାପନହେଲା ସେ ପୋଷ୍ୟପୁତ୍ର ଗ୍ରହଣ ପ୍ରଥା ବେଆଇନ ବୋଲି ସେତାର୍, ନାଗ୍‌ପୁର୍, ଝାନ୍‌ସି, କର୍ଣ୍ଣାଟ, ସମ୍ବଲପୁର ଅଧିକାରକଲେ ଏହାଙ୍କ ସମୟରେ ଡାକ ଟେଲିଗ୍ରାଫ ଓ ଶିକ୍ଷା ବିଭାଗର ସୁବନ୍ଦୋବସ୍ତ ରେଲ, ଭାରତର ସର୍ବତ୍ର ଲବଣ ଓ ଅଫିମ ବ୍ୟବସାୟୀର ସୁବିଧା ଇଞ୍ଜିନିଅର କଲେଜ ସ୍ଥାପନ କଲିକତାରେ ବାଳିକା ବିଦ୍ୟାଳୟ ବେଥୁନ୍ ସୋସାଇଟି ବିଶ୍ୱବିଦ୍ୟାଳୟ ମେଡିକେଲ୍ କଲେଜ ସ୍ଥାପିତ ହୋଇଥିଲା ଭାରତରେ ଏକପ୍ରକାର ଡାକ ମାଶୁଲ୍ ପ୍ରଚଳନ କରି ୧୮୫୬ ରେ ସ୍ୱଦେଶ ଯାତ୍ରାକଲେ ।

ଲର୍ଡକେନିଂ - ୧୮୫୬ - ୧୮୬୨ ପର୍ଯ୍ୟନ୍ତ ଶାସନଭାର ଗ୍ରହଣକଲେ । ଏହାଙ୍କସମୟରେ ( ୧ ) ସିପାହି ବିଦ୍ରୋହ, ( ୨ ) କମ୍ପାନୀର ରାଜ୍ୟଶେଷ ହୋଇଥିଲା ।

ଏହାଙ୍କର ଶାସନଭାର ଗ୍ରହଣକରିବା ଅଳ୍ପକାଳ ଭିତରେ ପାରସ୍ୟରାଜ ହିରାଟ ଜୟକରିବାରୁ ଇଂରାଜମାନଙ୍କ ସହିତଯୁଦ୍ଧ ହୋଇଥିଲା, ଏହିଯୁଦ୍ଧରେ ଇଂରାଜମାନେ ଜୟଲାଭକରିଥିଲେ- ତତ୍ପରେ ଚୀନମାନଙ୍କ ସହିତ ଯେଉଁଯୁଦ୍ଧ ହୋଇଥିଲା ତହିଁ- ରେ ମଧ୍ୟ ବଳଶାଳୀ ଇଂରାଜମାନେ ପରାସ୍ତହୋଇ ନଥିଲେ ।

କୋମ୍ପାନୀର ରାଜ୍ୟଶେଷ - ୧୮୫୮ ଖ୍ରୀଃରେ ରାଣୀ ଭିକ୍ଟୋ- ରିୟା କୋମ୍ପାନୀଙ୍କଠାରୁ ରାଜ୍ୟଭାର ଗ୍ରହଣକଲେ । ଏହିକାଳରେ ଏକଆଇନ ପାସ୍‌ହେଲାଯେ, ଭାରତବର୍ଷ ଅଦ୍ୟଠାରୁ ଇଂଲଣ୍ଡ ରାଣୀଙ୍କନାମରେ ଷ୍ଟେଟ ସେକ୍ରେଟେରିଙ୍କ ଦ୍ୱାରା ଶାସିତହେବ । ସେହିଦିନଠାରୁ ରାଜପ୍ରତିନିଧି ପଦସୃଷ୍ଟିହେଲା । ଏହାଙ୍କସମୟରେ ଭାରତବର୍ଷର ରଣତରୀ ଉଠାଇ ଦିଆହୋଇଥିଲା । ଇଣ୍ଡିଅନ

କାଉନସିଲସ୍ଙ୍କ ଦ୍ୱାରା ଗବର୍ଣ୍ଣର ଜେନେରେଲ ଓ ବୋମ୍ବାଇ ମାନ୍ଦ୍ରାଜର କାଉନସିଲରେ ରାଜକର୍ମଚାରୀ ଭିନ୍ନ ଅନ୍ୟାନ୍ୟ ଦେଶୀୟ ଓ ଇଉରୋପୀୟ ଲୋକ ମେମ୍ବର ରୂପେ ପ୍ରବେଶ ହେବାକୁ ଅଧିକାର ପ୍ରାପ୍ତ ହେଲେ । ଓ ଅନ୍ୟ ଏକଟି ଆକ୍ଟ ଦ୍ୱାରା ସୁପ୍ରିମକୋର୍ଟ ହାଇକୋର୍ଟରେ ପରିଣତ ହେଲା ।

---

## ୩ୟ ଅଧ୍ୟାୟ ।

## ରାଣୀ ଭିକ୍ଟୋରିଆଙ୍କ ଶାସନ ।

ଲର୍ଡ଼ଏଲଗିନ—(୧୮୬୨—୧୮୬୪) ଏ ମହାତ୍ମା କେନିଙ୍କ ଉତ୍ତାରୁ ଶାସନ ଭାରଗ୍ରହଣ କରିଥିଲେ । ହିମାଳୟର ନିକଟସ୍ଥ ଧର୍ମଶାଳା ନାମକ ସ୍ଥାନରେ ପ୍ରାଣତ୍ୟାଗ କଲେ ।

ସାର୍‌ଜନ ଲରେନ୍ସ — ଏ ଖ୍ରୀଃ ୧୮୬୪ ଅବ୍ଦରେ ଏଲଗିନଙ୍କ ଉତ୍ତାରୁ ଶାସନଭାର ଗ୍ରହଣକଲେ । ସିପାହୀ ଯୁଦ୍ଧସମୟରେ ପଞ୍ଜାବ ଏହାଙ୍କ କର୍ତ୍ତୃକ ଉଦ୍ଧାର ହୋଇଥିଲା । ଏହାଙ୍କ ପ୍ରଥମରାଜତ୍ୱରେ ଭୋଟାନଯୁଦ୍ଧ ସଂଘଟିତ ହୋଇଥିଲା । ଏହିଯୁଦ୍ଧରେ "ଦୋଆର" ଇଂରାଜମାନଙ୍କ ଅଧୀନରେ ରହିଲା । ଖ୍ରୀଃ ୧୮୬୬ ରେ ରୋହିଲଖଣ୍ଡ ଓ ଆର୍ଯ୍ୟାବର୍ତ୍ତିରେ ଭୟାନକ ଦୁର୍ଭିକ୍ଷ ହୋଇଥିଲା । ସାର ଜନ ଲରେନ୍ସ ୧୮୬୮ ରେ ଇଂଲଣ୍ଡକୁ ପ୍ରତ୍ୟାଗମନକଲେ । ଏହାଙ୍କ ସମୟରେ ଓଡ଼ିଶାରେ ବିଶେଷ ଦୁର୍ଭିକ୍ଷ ହୋଇଥିଲା ।

ଲର୍ଡ଼ମେଓ — ଏ ୧୮୬୯ ରେ ଭାରତର ଗବର୍ଣ୍ଣର ଜେନେରେଲ ହେଲେ । ଏହାଙ୍କ ସମୟରେ ଯେଉଁ 'ଅମ୍ବଲା' ଦରବାର ହୋଇଥିଲା ତହିଁରେ ସେରଲି, ଅଫଗାନୀ ସ୍ଥାନର ଅମୀର ହେଲେ । ମହାରାଣୀଙ୍କ ପୁତ୍ର "ଡିଉକ ଅଫ ଏଡିନବର୍ଗ" ଏହାଙ୍କ

ଗୃହର ଦାଗୀନ ଭାରତକୁ ଅଗମନ କରଥିଲେ । ଏହାଙ୍କ ସମୟ୍ରେ କେନ୍ଦ୍ରର ପ୍ରଧାନ ଶାସନଶାଖା ସଂଶୋଧନ ଓ କୃଷି ସମ୍ବନ୍ଧୀୟ ଗୋଟିଏ ବିଭାଗ ସ୍ଥାପନ କାର୍ଯ୍ୟ ସମ୍ପାଦିତ ହୋଇଥିଲା ଖ୍ରୀ: ୧୮୬୨ ରେ ଉଚ୍ଚଶିକ୍ଷା ସମ୍ବନ୍ଧେ ବିଶେଷ ଗୋଲମାଲ ଉପସ୍ଥିତ ହୋଇଥିଲା । ଏ ପୋର୍ଟଫୋଲିଓରେ ଜଣେ କଏଦକାସ୍ ହତ ହୋଇଥିଲେ ।

ନର୍ଥବ୍ରୁକ—( ୧୮୭୨-୧୮୭୬ ) ଏହାଙ୍କ ସମୟରେ ଛିନ୍ନତ ଅଞ୍ଚଳରେ ଦୁର୍ଭିକ୍ଷ ହୋଇଥିଲା । ବରଦାର ରାଜା ରାଜ୍ୟଚ୍ୟୁତ ହୋଇ ଗାଇକୋବାଡର ପତ୍ନୀ ଯମୁନାବାଇଙ୍କର ପୋଷ୍ୟପୁତ୍ର ରାଜ୍ୟଶାସନ ଅଧିକାର ପ୍ରାପ୍ତହେଲେ । ଭାରତେଶ୍ୱରୀଙ୍କ ଜ୍ୟେଷ୍ଠପୁତ୍ର "ପ୍ରିନ୍ସ ଏଲ ବାର୍ଟ" ଖ୍ରୀ ୧୮୭୫ରେ ଭାରତବର୍ଷକୁ ଅଗମନ କରିଥିଲେ । ଏ ହିସମୟରେ କଲିକତାରେ ଏକ ବିଜ୍ଞାନସଭା ନବସ୍ଥାପିତ ହୋଇଥିଲା । ନର୍ଥବ୍ରୁକ ଦୟାଶୀଳ ପରଦୁଃଖକାତର ଓ ପ୍ରଜାପ୍ରିୟ ଥିଲେ -

ଲର୍ଡ ଲିଟନ—( ଖ୍ରୀ: ୧୮୭୬-୧୮୮୦ ) ଏହାଙ୍କ ଶାସନ ସମୟରେ ନିମ୍ନୋକ୍ତ ପ୍ରଧାନ ଘଟଣାମାନ ଘଟିଥିଲା ।

ଦିଲ୍ଲୀ ଦରବାର—ଏହି ଦରବାରରେ ରାଣୀଭିକ୍ଟୋରିୟା ସନ ୧୮୭୭ ସାଲ ଜାନୁଏରୀ ପହିଲା ତାରିଖରେ ଭାରତେଶ୍ୱରୀ ପଦ ପ୍ରାପ୍ତ ହେଲେ । ଏହି ସମୟରେ ଦାରୁଣ ଦୁର୍ଭିକ୍ଷ ହେତୁ ଦକ୍ଷିଣାଞ୍ଚଳର ପ୍ରାୟ ୫୨ ଲକ୍ଷ ଲୋକ ପ୍ରାଣ ହରାଇ ଥିଲେ ।

ଦ୍ୱିତୀୟ ଅଫଗାନ ଯୁଦ୍ଧ — ୧୮୭୮ ରେ ଇଂରେଜ ରୁଷିଆର ଆକ୍ରମଣରୁ ଭାରତକୁ ରକ୍ଷା କରିବା ନିମନ୍ତେ କାବୁଲ ଅମୀର ସେରଅଲିଙ୍କ ସହିତ ସନ୍ଧି ପ୍ରସ୍ତାବ କରିଥିଲେ । ପ୍ରଥମ ଖାଇବର ଓ ବୋଲେନ ନାମକ ଦୁଇଗିରି ସଙ୍କଟ ଇଂରେଜମାନଙ୍କ ଅଧୀନରେ ଥିବ । ଦ୍ୱିତୀୟତଃ ଜଣେ ଇଂରେଜ ରେସିଡେଣ୍ଟ କାବୁ-

ଲଟରେ ରହିବ । ଏହି ପ୍ରସ୍ତାବରେ ଅମୀର ଅସମ୍ମତ ହେବାରୁ ନବେମ୍ବର ମାସରେ ତାଙ୍କ ବିରୁଦ୍ଧେ ଯୁଦ୍ଧ ଘୋଷଣା ହେଲା । ଅମୀର ଦେଶ-ତ୍ୟାଗକରି ପଳାୟନ ସମୟେ ମାର୍ଗରେ ପଞ୍ଚତ୍ୱ ପ୍ରାପ୍ତ ହେଲେ । ଇଂରେଜମାନେ ତାଙ୍କର ଜ୍ୟେଷ୍ଠପୁତ୍ର ୟାକୁବଖାଁକୁ ସିଂହାସନରେ ବସାଇ ୧୮୭୯ ସାଲରେ ଗଣ୍ଡମାକ ସନ୍ଧି ସ୍ଥାପନ କରି କାବୁଲରେ ଇଂରେଜ ରେସିଡେଣ୍ଟ ସ୍ୱରୂପ ଲୁଇକେଭେଗେ ନେରଙ୍କୁ ପଠାଇଲେ । କାବୁଲମାନେ ଏହାଙ୍କୁ ହତ କରିବାରୁ ପୁନର୍ଯ୍ୟ ଯୁଦ୍ଧ ଘୋଷଣା ହେଲା । ଅଳ୍ପ କାଳ ମଧ୍ୟରେ ଫ୍ରେଡାରିକ ରବାର୍ଟ କାବୁଲ ଅଧିକାର ପୂର୍ବକ ୟାକୁବଖାଁକୁ ବନ୍ଦୀକରି ଭାରତ ବର୍ଷକୁ ପଠାଇଲେ । ଏବଂ ଅବ୍ଦୁଲ ରହେମନ ନାମକ ଦୋସ୍ତ ମହ-ମ୍ମଦଙ୍କର ଅପର ଏକ ପୁତ୍ରକୁ ସିଂହାସନରେ ବସାଇବାକୁ ସ୍ଥିର କଲେ । ଦେଶୀୟ ସମ୍ବାଦ ପତ୍ରର ସ୍ୱାଧୀନତା ରହିତ ଏବଂ ଅସ୍ତ୍ର ସମ୍ବନ୍ଧୀୟ ଆଇନ ପାଶକଲେ । ସିଭିଲ ସର୍ଭିସ ପରୀକ୍ଷାରେ ୨୧–୧୯ ବର୍ଷ ପର୍ଯ୍ୟନ୍ତ ସ୍ଥିର ହୋଇଥିଲା । ଏହି ବର୍ଷ ପୁସ୍ପର ରାଜା ତଭ୍ୟା ପର୍ଗ୍ଧରେ ଡାକକ୍ଷୀବନ ଆଣ୍ଡାମାନ ଦ୍ୱୀପକୁ ନିର୍ବାସିତ ହେଲେ । ବ୍ରହ୍ମଦେଶ ରାଜା ସହିତ ଇଂରେଜମାନଙ୍କ ବିଦ୍ରୋହ ହେବାରୁ ବିତା-ଡ଼ିତ ହେଲେ । ଏହାଙ୍କ ସମୟରେ ମନିଅଡ଼ର , ଇନସୋର , କାର୍ଡ ପ୍ରଚଳିତ ହେଲା । ବୋମ୍ବାଇ ପ୍ରେସିଡେଣ୍ଟ ନିବାସୀ ବଲବନ୍ତ ରାଓ ବିଦ୍ରୋହୀ ହେବାରୁ ଦ୍ୱୀପାନ୍ତରିତ ହେଲେ । ସବଜଜ୍ ମୁନସଫ ପଦ ଏହି ସମୟରେ ସୃଷ୍ଟି ହୋଇଥିଲା । ଲର୍ଡଲିଟନ ୧୮୮୦ ସାଲରେ କାର୍ଯ୍ୟ ତ୍ୟାଗକଲେ ।

ଲର୍ଡରିପନ୍ — ୧୮୮୦ ସାଲରେ ଶିମଲାଠାରେ କାର୍ଯ୍ୟଭାର ଗ୍ରହଣ କଲେ । ରିପନ୍ ଗବର୍ଣ୍ଣର ଜେନେରେଲ ହୋଇ ପ୍ରଥମେ କୁଅବ୍ଦୁଲ ରହେମାନ. କାବୁଲର ଅମୀର କଲେ । ଏହାଙ୍କ ସମ-ୟରେ ୟାକୁବଖାଁ ଭାଇ ଇୟୁବଖାଁ ଜେନେରେଲ ବରୋସଙ୍କ

କାନ୍ଦାହାର ନିକଟସ୍ଥ ଖୁସ୍କଣା ଗ୍ରାମଠାରେ ପରାଜୟ କଲେ । ବନ୍ଧୁ
ଜେନେରେଲ ରବାର୍ଟଙ୍କ ଦ୍ୱାରା ମାଇଓୟାନ୍ଦରେ ପରାସ୍ତ ହୋଇ
ପଳାୟନ କଲେ । ଇତ୍ୟବସରେ କିଛି କାଳ ପାଇଁ ଅାଫଗାନ ସ୍ଥାନରେ
ଶାନ୍ତି ସ୍ଥାପନ ହୋଇ ଥିଲା । ଅକ୍ଟୋବର ମାସରେ ନାଇନିତାଲ
ନାମକ ପର୍ବତର ଅକସ୍ମାତ୍ ଖଣ୍ଡେ ପ୍ରସ୍ତର ଖସି ପଡ଼ିବାରୁ ଅନେକ
ଇଉରୋପୀୟ ମୃତ୍ୟୁ ହୋଇଥିଲେ ।

୧୮୮୧ ଖ୍ରୀଃ ର ଫେବ୍ରୁୟାରୀ ତା ୧୭ ରାତ୍ରରେ ଭାରତବର୍ଷର
ଲୋକ ସଂଖ୍ୟା, ଓ ୧୮୮୨ ରେ ଦେଶୀୟ ସମ୍ବାଦ ପତ୍ର ସମୂହର
ସ୍ୱାଧୀନତା ଲୋପବିଷୟକ ଆଇନର ଉଚ୍ଛେଦ କରିଥିଲେ ୧୮୮୨
ରେ ମୁଦ୍ରାଯନ୍ତ୍ର ବିଷୟକ ଆଇନ ଉଚ୍ଛେଦ କଲେ ।

ଲର୍ଡ଼ ଡଫରିନ୍ — ରୟୋଲ ପିଣ୍ଡିର ଦରବାର, ୩ ୟ ବ୍ରହ୍ମଯୁଦ୍ଧ
ସ୍ୱାଧୀନ ବ୍ରହ୍ମ ଦେଶର ରାଜା "ଥିବ" ଧୃତ ହେଲେ ଇନକ
ଟେକ୍ସ ଏହାଙ୍କ ସମୟରେ ବେଶି ପରିମାଣରେ ବୃଦ୍ଧି ହୋଇଅଛି ।
ଏହାଙ୍କ ସମୟରେ ୧୮୮୭ ରେ ଯୁବିଲି ( ଭାରତେଶ୍ୱରୀଙ୍କ ରାଜ୍ୟ
ଶାସନ ଉପଲକ୍ଷେ ଗୋଟିଏ ପ୍ରଧାନ ଉତ୍ସବ ) ହୋଇଥିଲା ।

ବ୍ରହ୍ମଯୁଦ୍ଧ — ଇଂରେଜ ରେସିଡେଣ୍ଟ, ଥିବଙ୍କ ଦୁର୍ବ୍ୟବହାରରେ
ବ୍ରହ୍ମରାଜଧାନୀରୁ ଚାଲି ଆସିଲେ । ଥିବ, ଇଂରେଜ ବଣିକମାନଙ୍କ
ପ୍ରତି ଅତ୍ୟାଚାର କରିବା ଏବଂ ଇଂରେଜମାନଙ୍କ ସନ୍ଧି ପ୍ରସ୍ତାବରେ
ତାଚ୍ଛଲ୍ୟ ଭାବ ଦେଖାଇବାରୁ ବ୍ରହ୍ମସମର ଆରମ୍ଭ ହେଲା । ୧୮୮୫ରେ
ଏହି ଶେଷ ଯୁଦ୍ଧ ଆରମ୍ଭ ହୋଇଥିଲା । ଇଂରେଜ ସୈନ୍ୟ ବ୍ରହ୍ମ
ରାଜଧାନୀ ମାନ୍ଦାଲେ ନଗରଠାରେ ଉପସ୍ଥିତ ହୁଅନ୍ତେ 'ଥିବ'
ଇଂରେଜମାନଙ୍କ ପାଖରେ ଆତ୍ମ ସମର୍ପଣ କଲେ । 'ଥିବ' ବନ୍ଦୀହୋଇ
ବୋମ୍ବାଇର ରତ୍ନଗିରିରେ ବାସ କରୁଅଛନ୍ତି । ୧୮୮୬ ସାଲ
ଜାନୁଆରି ମାସ ପ୍ରଥମ ଦିବସ ବ୍ରହ୍ମ ଇଂରେଜ ରାଜ୍ୟ ଭୁକ୍ତ ହେବାର
ଘୋଷଣାକରି ଡଫରିନ୍ ଉତ୍ତର ଏବଂ ଦକ୍ଷିଣ ବ୍ରହ୍ମ ଜଣେ ଚିଫ୍

କମିଶନରଙ୍କ ଶାସନାଧୀନ ହେଲେ । ଏତଦ୍‌ବ୍ୟତୀତ ୧୮୮୬ ରେ ପାକପଥ ସମର କ୍ଷେତ୍ରରେ ଇଂରେଜ ସୈନ୍ୟମାନଙ୍କର ଗୋଟିଏ କୃତ୍ରିମ ଯୁଦ୍ଧ ପ୍ରଦର୍ଶିତ ହୋଇଥିଲା ।

ଡଫରିନ ୧୮୮୮ ସାଲ ଡିସେମ୍ବର ମାସରେ ଭାରତର ନୂତନ ଗବର୍ଣ୍ଣର ଜେନେରଲ ଏବଂ ଭାଇସ୍‌ରୟ ଲର୍ଡଲାନ୍‌ସଡାଉନଙ୍କ ରାଜ୍ୟଭାର ଦେଇ ସ୍ୱଦେଶକୁ ଯାତ୍ରାକଲେ ।

ଲର୍ଡ ଲାନ୍‌ସ ଡାଉନ—ଡଫରିନଙ୍କ ଉତ୍ତାରୁ ୧୮୮୮ ରେ ଲାନ୍‌ସ ଡାଉନ ଭାରତ ସିଂହାସନ ଆରୋହଣ କଲେ । ୧୮୮୯ ସାଲ ଶେଷ ଭାଗରେ ରାଜପୌତ୍ର "ପ୍ରିନ୍‌ସ ଏଲବାର୍ଟ ଭିକ୍ଟର" ଭାରତକୁ ଶୁଭାଗମନ କରିଥିଲେ । ତାହାଙ୍କ ଆଗମନରେ ରାଜଭକ୍ତ ଭାରତ ବାସୀ ସ୍ୱଭାବସିଦ୍ଧ ରାଜଭକ୍ତି ଦେଖାଇ ଥିଲେ କାଶ୍ମୀର ରାଜ ରାଜ୍ୟ ଶାସନରେ ଅପାରଗ ହୋଇ ୧୮୯୦ ରେ ଇଂରେଜରାଜଙ୍କ ହସ୍ତରେ ରାଜ୍ୟଶାସନ ଭାର ଅର୍ପଣ କରି ଅଛନ୍ତି, ଇଂରାଜ ରେସିଡେଣ୍ଟ ଏବଂ ଆସାମର ଚିଫ୍ କମିଶନର କେତେକ ସୈନ୍ୟ ସହ ମଣିପୁରରେ ହତ୍ୟା ହେବାରୁ ମଣିପୁର ସୌଭାଗ୍ୟରବି ଚିରଦିନ ଅସ୍ତମିତ ହୋଇଅଛି । ଲାନ୍‌ସଡାଉନ ମଣିପୁର ରାଜାଙ୍କୁ ଦ୍ୱୀପାନ୍ତରିତ, ଏବଂ ତାହାଙ୍କ ଭ୍ରାତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରି ରାଜବଂଶୀୟ ଏକ ବାଳକକୁ ୧୮୯୧ ରେ ଉକ୍ତ ରାଜପଦ ଦେଇଅଛନ୍ତି ବଙ୍ଗଦେଶର ସହବାସ ସମ୍ମତି ଆଇନ ଲାନ୍‌ସ ଡାଉନଙ୍କ ସମୟରେ ଦୃଢୀଭୂତ ହୋଇଅଛି । ଏହାଙ୍କ ରାଜତ୍ୱ ସମୟରେ ଭାରତବାସୀ " ଦାଦାଭାଇ ନୌରୋଜୀ " ପାର୍ଲିଆମେଣ୍ଟ ସଭାର ମେମ୍ବରପଦରେ ନିଯୁକ୍ତହେଲେ । କେନ୍ଦୁଝର ଗଡଜାତର ବିଦ୍ରୋହାଗ୍ନି ଏହାଙ୍କ ସମୟରେ ପ୍ରଦୀପ୍ତ ହୋଇ ସାଧାରଣତଃ ନିର୍ବାପିତ ହୋଇଅଛି ।

( ଇଂରେଜ—ରାଜତ୍ୱରେ ଭାରତର ସାଧାରଣ ଅବସ୍ଥା )

ସୁସଭ୍ୟ ଇଂରେଜ ଜାତିର ଶାସନରେ ଭାରତ ବର୍ଷର ସୁଖ ସମୃଦ୍ଧି ସଭ୍ୟତା କିପ୍ରକାର ବୃଦ୍ଧି ହୋଇଅଛି ତତ୍ସମ୍ବନ୍ଧ ସଂକ୍ଷେପରେ ଲେଖା ଯାଉଅଛି ।

ଇଂରେଜ ରାଜତ୍ୱରେ ସତୀ ଦହନ, ଗଙ୍ଗାରେ ସନ୍ତାନ ବିସର୍ଜନ, ରାଜପୁତ ଜାତିର କନ୍ୟାହତ୍ୟା, ଖଣ୍ଡ ପ୍ରଭୃତି ଅନାର୍ଯ୍ୟ ଜାତିର ନରବଳି, ଇତ୍ୟାଦି କୁପ୍ରଥା ଏକାବେଳକେ ତିରୋହିତ ହୋଇଅଛି । ରାଜପଥ, କେନେଲ, ରେଲୱେ, ବାଷ୍ପୀୟପୋତ, ଡାକ, ଟେଲିଗ୍ରାଫ ପ୍ରଭୃତି ପ୍ରସ୍ତୁତ ଓ ବନ୍ଦୋବସ୍ତରେ ଭାରତର ଅଶେଷ ମଙ୍ଗଳ ସାଧିତ ହେଉଅଛି । ମୁସଲମାନ ଶାସନ କାଳରେ ରାଜାମାନେ ଘୋର ପ୍ରଜାପୀଡ଼କ, ଦୁର୍ନୀତି ପରାୟଣ ସ୍ୱେଚ୍ଛାଚାରୀ ହୋଇ ପ୍ରଜା ସକଳଙ୍କ ପ୍ରତି ଅତି ଅପରିମିତ ଅତ୍ୟାଚାର କରୁଥିଲେ, ଇଂରେଜ ରାଜତ୍ୱରେ ସେ ସମସ୍ତ ବିଲୁପ୍ତ ହୋଇ ଶାନ୍ତି ବିରାଜମାନ ହୋଇଅଛି । ଲୋକେ ସ୍ୱଜାତୀୟ ଭାଷା ଏବଂ ସମାଜ ଉନ୍ନତି ପ୍ରତି ମନଯୋଗୀ ହୋଇ ଅଛନ୍ତି । ଇଂରେଜମାନେ ମୁସଲମାନମାନଙ୍କ ପରି ଯଥେଚ୍ଛାଚାରୀ, ବିଳାସପ୍ରିୟ, ନୁହନ୍ତି । ଇଂରେଜ ରାଜତ୍ୱରେ ବିଦ୍ୟାଳୟ, ଚିକିତ୍ସାଳୟ, ପ୍ରଭୃତି ସ୍ଥାନେ ୨ ସଂସ୍ଥାପିତ ହୋଇ ବିଦ୍ୟାର ଗୌରବ ଦିନ ଦିନ ପରିବର୍ଦ୍ଧିତ ହେଉଅଛି । ଏମାନେ ବିଜ୍ଞାନ ବଳରେ ନାନାବିଧ ଅଲୌକିକ ଯନ୍ତ୍ରାଦି ଆବିଷ୍କାର କରି ସକଳ ପ୍ରଦେଶର ଅପରିମେୟ ଉପକାର ସଂସାଧନ କରୁଅଛନ୍ତି । ଭାରତରେ ମହରଟ୍ଟା ମୁସଲମାନ ପ୍ରଭୃତି ଯେତେ ଜାତୀୟ ଲୋକ ରାଜତ୍ୱ କରିଥିଲେ ଇଂରେଜମାନଙ୍କ ତୁଲ୍ୟ କେହି ଏତାଦୃଶ ସୁଶୃଙ୍ଖଳାରେ ରାଜ୍ୟଶାସନ କରିନଥିଲେ । ଇଂରେଜ ଶାସନରେ ଭାରତର ଦୁରବସ୍ଥା ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଅଛି ।

—***—

# ବିଜ୍ଞାପନ ।

## ସୁଲଭ ମୂଲ୍ୟ **କମଳା-ସୁନ୍ଦରୀ** ପଦ୍ୟପୁସ୍ତକ ।

କମଳସୁନ୍ଦରୀ ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଦୁଇପଇସା ମାତ୍ର, ଛାତ୍ରମାନଙ୍କ ସୁବିଧା ନିମିତ୍ତ ବର୍ତ୍ତମାନ ଅଳ୍ପ ମୂଲ୍ୟରେ ବିକ୍ରୟ କରୁଅଛୁଁ, ଅର୍ଦ୍ଧଅଣା ଖଣ୍ଡେ ଷ୍ଟାମ୍ପରେ ୮ ୧୦ ଖଣ୍ଡ ପୁସ୍ତକ ନେଇ ପାରିବ ଗ୍ରାହକଶ୍ରେଣୀ ମାନେ ନିମ୍ନ ଠିକଣାରେ ପତ୍ର ଦେଲେ ପାଇ ପାରିବେ ।

ଶ୍ରୀ ଦାମୋଦର ମିଶ୍ର ପଦ୍ୟାଳଙ୍କାର
ଗଡ଼ଧାମା ବାମଣ୍ଡା
ସମ୍ବଲପୁର ପୋ ।